# ମଣିଷ-ମଯୂର



DCIC

# ନିଗଡ଼-ନିସ୍ୱନ



ପ୍ରକାଶକ—ଶ୍ରୀବୀରକିଶୋର ଦାସ

( ରଚନା ସମିତି ଆନୁକୂଲ୍ୟରେ )

ପ୍ରଥମ ସଂସ୍କରଣ

୧୯୪୭



# ସୂଚୀ





ଅତୀତର ଦୁଃଖର ଜୀବନ ସ୍ମରଣ କଲେ ଯେ ସୁଖ ଅନୁଭୂତ ହୁଏ ତାହା ବର୍ଣ୍ଣନା କରିବା କଠିନ । ବିଖ୍ୟାତ ଇଂରେଜ କବି ଲେଖି ଅଛନ୍ତି :—

"Our sweetest songs are those
That tell of saddest thoughts"

ଦୁଃଖର ଚିନ୍ତାରେ ଭରା ସଙ୍ଗୀତହିଁ ମଧୁରତମ । ଏହାକୁ ଟିକିଏ ପରିବର୍ତ୍ତନ କରି କୁହାଯାଇପାରେ ଯେ ଦୁଃଖର ସ୍ମୃତିହିଁ ସବୁଠାରୁ ସୁଖର । ଆଜି କଂଗ୍ରେସର ଯେ ଅବସ୍ଥା, ସେଥିରେ ଅନେକ ନୂତନ କଂଗ୍ରେସ ଲୋକ ମଧ୍ୟ କଳ୍ପନା କରି ପାରିବେ ନାହିଁ—କିପରି ଦୁଃଖ ଓ ନିର୍ଯ୍ୟାତନା ମଧ୍ୟଦେଇ କଂଗ୍ରେସ ଗତି କରି ଆସି, ବର୍ତ୍ତମାନ ଅବସ୍ଥାରେ ପହଞ୍ଚିଛି ।

୧୯୩୦ ସାଲ ଲବଣ-ସତ୍ୟାଗ୍ରହ ସମୟରେ ପାଟଣାରେ ଯେଉଁ କେମ୍ପ୍‌ଜେଲ ହୋଇଥିଲା ଓ ଯେଉଁଠି ପ୍ରାୟ ଚାରି ହଜାର ରାଜନୈତିକ ବନ୍ଦୀଙ୍କୁ ରଖା ହୋଇଥିଲା, ସେଇଠି କେତେ ମାସ ରହିବାର ସୌଭାଗ୍ୟ ମୋର ଘଟିଥିଲା । ସେ ବନ୍ଦୀଶାଳାର ଅବସ୍ଥା ଆଜି ଅନେକ କଳ୍ପନା କରି ପାରିବେ ନାହିଁ । ସେତେବେଳେ ଜେଲରେ ରହିବାରେ ସୁଖ ଥିଲା, କାରଣ ସେଠି ବେଶୀ ଦୁଃଖ ଥିଲା । ସେହି ସମୟରେ ଉପସ୍ଥିତ ଦୁଃଖକୁ ହସ ଖେଳରେ ଉଡ଼ାଇ ଦେବା ପାଇଁ ନାନାଦି ବ୍ୟବସ୍ଥା କରାଯାଇଥିଲା । ସେଥି ମଧ୍ୟରୁ ଗୋଟିଏ ଥିଲା-କବିତା ରଚନା ଓ ସେଥିରେ ପ୍ରତିଦ୍ୱନ୍ଦ୍ୱିତା । ସେହି ସମୟର ରଚିତ କବିତାମାନଙ୍କୁ ମୁଁ ଜୀବନର ଧନ କରି ସାଇତି ରଖିଥିଲି । ସେଥିରୁ କେତୋଟି ବାଛି ହୋଇ ଏଥିରେ ପ୍ରକାଶିତ ହେଉଛି ।

ଲେଖକମାନଙ୍କ ମଧ୍ୟରୁ ଅନେକ ଆଜ ଇହ ଧାମରେ ନାହାନ୍ତି; କେତେକ, ହୁଏତ, କଂଗ୍ରେସ ସହିତ ଆଉ ସମ୍ପର୍କ ରଖି- ନାହାନ୍ତି । କିନ୍ତୁ ସମସ୍ତେ ମୋର ଆଦରର ସ୍ମୃତି । ସମସ୍ତଙ୍କଠିଁ ଦେଶ କୃତଜ୍ଞ । ଯେଉଁମାନେ ସ୍ୱର୍ଗରେ ଅଛନ୍ତି, ସେମାନଙ୍କୁ ଏହି ପୁସ୍ତକ ପ୍ରକାଶକରି ମୋର ସ୍ନେହର ଅର୍ଘ୍ୟ ଅର୍ପଣ କରୁଅଛି । ସେମାନଙ୍କ ପାଇଁ ବର୍ତ୍ତମାନ ସୁଦ୍ଧା ମୋ ଆଖିରେ ଲୋତକ ଝରୁଛି ରହିଛି ଓ ଆଜୀବନ ତାହା ଶୁଖିବ ନାହିଁ । ଯେଉଁମାନେ ଆଜ କଂଗ୍ରେସରେ ନାହାନ୍ତି, ସେମାନଙ୍କ ପ୍ରତି ମୋର ସେହିପରି ମଧ୍ୟ ଶ୍ରଦ୍ଧା ରହିଛି । ସମସ୍ତଙ୍କୁ ଆଜ ଏହି ଅବସରରେ ମୋର ଶ୍ରଦ୍ଧା ଜ୍ଞାପନ କରୁଛି । ଆଜ ସେମାନଙ୍କ ଶ୍ରମ ସାର୍ଥକ ହୋଇଛି—ସେମାନଙ୍କ ତ୍ୟାଗ ଓ ଦୁଃଖ ପାଇଁ ଗର୍ବ କରିବାର ଅବସର ମିଳିଛି ।

ଅଗଷ୍ଟ ୧୫. ୧୯୪୭
କଟକ

ଶ୍ରୀହରେକୃଷ୍ଣ ମହତାବ ।

# ନିଗଡ଼ ନିସ୍ୱନ



## —ଯୁବକର ସ୍ୱପ୍ନ—

ଯବେ ଯେବେ ଆମଦେଶ ନୁହଇ ଅମର,
ଆମ ଘରେ ରାଜା ଆସି ହୁଏ ସାତପର,
ଇଚ୍ଛାହୁଏ ହୁଅନ୍ତାକି ଅସୀମ ଶକତି,
କରନ୍ତି ସ୍ୱାଧୀନ ଦେଶ—ଏକା ମୁଁ ତଡ଼ନ୍ତି !
କରନ୍ତି ଚୂର୍ଣ୍ଣ ବିଚୂର୍ଣ୍ଣ ଠିକି ଠିକି କରି
ଅଧୀନତା ଶିର, ଜଣେ ସୁଦ୍ଧା ନ ରହନ୍ତେ ଅରି ।
ବିଭବରେ ପୂରି ହସି ଉଠନ୍ତା ମୋ ଦେଶ,
ହୋଇ ଯାନ୍ତା ସବୁ ଦୁଃଖ ଏକବାରେ ଶେଷ ।
ଗାଆନ୍ତା ଜଗତ ଜୟ ସ୍ୱାଧୀନ ଭାରତ,
ପୁଲକେ ଶୁଣନ୍ତି ମୁହିଁ ସେ ଗାନ ମହତ । ୧ ।

ଶୁଣେ ଯେବେ ବୀରଙ୍କର ପୁଣ୍ୟ ଯଶ କଥା
ଦେଶ ପାଇଁ ତ୍ୟାଗ,ତାଙ୍କ ବୀରତ୍ୱ ବାରତା;
ଇଚ୍ଛା ହୁଏ ହୁଅନ୍ତିକି ମୁହିଁ ଜଣେ ବୀର !
ରହନ୍ତା ଜଗତେ ମୋର ପୁଣ୍ୟ କୀର୍ତ୍ତି ଥିର ।

ଶିବାଜୀ, ପ୍ରତାପ ଅବା ବୀର ରଣଜିତ
ତାଙ୍କ ସଙ୍ଗେ ହୁଅନ୍ତା ମୋ ସୁନାମ ଲିଖିତ ।
ନେପୋଲିଅନ୍ ଅବା ବିଶ୍ୱଜୟୀ ସିକନ୍ଦର
ହୁଅନ୍ତାକି ତାଙ୍କ ପରି ମୋ ନାମ ଅମର ! ୨ ।

ଶୁଣେ ଯେବେ ଜ୍ଞାନୀମୁଖୁଁ ସୃଷ୍ଟିର ମହତ୍ତ୍ୱ,
ଇଚ୍ଛାହୁଏ ଜାଣିବାକୁ ମୋର ଆତ୍ମତତ୍ତ୍ୱ ।
ବୁଝନ୍ତି, ଦେଖନ୍ତି ମୁହିଁ କିଏ ସେ ମୂଳରେ
ସାରା ବିଶ୍ୱ ପଛ ଅଡ଼େ ରହେ ଗୋପନରେ ।
ନାଚିକେତା ପରି ମୁହିଁ ମୃତ୍ୟୁ ମୁଖେ ଯାଇ
ଖୋଜନ୍ତି ବିଶ୍ୱର ତତ୍ତ୍ୱ ରହିଅଛି ଯାହିଁ ।
ହୁଅନ୍ତି ମୁଁ ଆତ୍ମଦର୍ଶୀ ଶୁକବ୍ୟାସସମ
ଜାଣନ୍ତି ବିଶାଳ ଏହି ସୃଷ୍ଟି-ଉପକ୍ରମ ।
ବିଶ୍ୱର ଏ ପ୍ରହେଳିକା କରି ସମାଧାନ,
କରନ୍ତି ଜଗତେ ମୁହିଁ ଶାନ୍ତିର ବିଧାନ । ୩ ।

ଘରଅଡ଼େ ଦେଖେ ଯେବେ ରୋଗ ଦୁଃଖ ଭରା —
ଦୀର୍ଘଶ୍ୱାସେ ହାହାକାରେ ପୂରିଅଛି ଧରା,
ଇଚ୍ଛାହୁଏ ଥାଆନ୍ତାକି ଶକତି ମୋହର
ଦୂର କରନ୍ତି ମୁଁ ଦୁଃଖ, ଶୋକ ଜଗତର ।
କାହାର ହୃଦୟ କେବେ ନ ହୁଅନ୍ତା ଭାରି
କଉଣସି ଦୁଃଖେ କେହି ନ ହୁଅନ୍ତା ଝୁରି ।
ନ ଛାଡ଼ନ୍ତେ କେହି କେବେ ଦୀର୍ଘ ଶ୍ୱାସ ଥରେ
ନ ରହନ୍ତା ହାହାକାର ଶବ୍ଦ ଜୀବନରେ ।

ନ ବୁହନ୍ତା ବନ୍ଦୁଟିଏ ଲୋକଙ୍କ ଆଖିରୁ
ହୁଅନ୍ତା ସମୂଳେ ଦୁଃଖ ବିଲୋପ ମହୀରୁ । ୮

ଯୁବକ ମୁଁ—ଏହିପରି ଦେଖଇ ସ୍ୱପନ,
ସ୍ୱପ୍ନରେ ହିଁ ଗଢ଼ା ମୋର ତରୁଣ-ଜୀବନ ।
ନ ଦେଖିବି ଯେଉଁଦିନ ସ୍ୱପ୍ନ ଆଉ କେବେ
ତରୁଣତା ସାଙ୍ଗ ହେବ ସେହିଦିନ ତେବେ ।
ପୁଣି ଘଟିବ ସବୁ ହେବ କର୍ମ କଲେ ସିନା !
ଖାଲି ଇଚ୍ଛା ନିରର୍ଥକ ସ୍ୱପ୍ନ-କର୍ମ ବିନା ।
ନିରର୍ଥକ ସ୍ୱପ୍ନ ସିନା ସବୁ ଦୁଃଖ ଜଡ଼
ଅଶାନ୍ତ ବିକ୍ଷିପ୍ତ କରେ ମନ ନିରନ୍ତର ।
କର୍ମହୀନ-ମିଥ୍ୟା-ସ୍ୱପ୍ନ ନ ଜାଗୁ ଏ ମନେ
କର୍ମମୟ ସତ୍ୟ ସ୍ୱପ୍ନ ଦେଖେଁ ଅନୁକ୍ଷଣେ ।
ଶରୀରର ପ୍ରତିବିନ୍ଦୁ ଶୋଣିତ ଶୁଖାଇ,
କର୍ମବଳେ ସ୍ୱପ୍ନ ସତ୍ୟ ନିଏ ମୁଁ କରାଇ ।

ଶ୍ରୀହରେକୃଷ୍ଣ ମହତାବ ।



## —ମଞ୍ଜରିକା—

### ( ୧ )

କିଏ ଯେ ସେ ରଙ୍ଗିଗଲା ସ୍ୱଚ୍ଛ ଫୁଲ ଗୁଚ୍ଛ,
ଶୈଶବର ସୁକୁମାର ସୁଗୋଲ ବଦନେ—
ମନ୍ଦହାସେ ରକ୍ତ ଆଭା, ଯେସନ୍ତେ ଅଂଶୁମାଳୀ
ଦିଗ୍‌ବଳୟେ ରଙ୍ଗା ମେଘ ଉଡ଼ାଏ ପବନେ ।
କିଏ ସେହି ସୁରଚିକା—ମୁହିଁ ତ ନ ଜାଣେ
ମଞ୍ଜରିକା ମାତ୍ର ଯାହା ସେ ରଚିକା ଠାଣେ ।

କିଏ ସେ ଯେ ରଙ୍ଗିଗଲା ଶୁଭ୍ର ଫୁଲ ଗୁଚ୍ଛ,
ଯୌବନର କମନୀୟ ପ୍ରଫୁଲ୍ଲ ବଦନେ—
ମନ୍ଦହାସେ ପ୍ରେମଧାରା ଯେସନେ ଅଶ୍ରାନ୍ତ,
ରତ୍ନାକର ଉତ୍‌ଫୁଲ୍ଲିଇ ଢେଉ ଉତ୍ତୋଳନେ ।
କିଏ ସେହି ସୁରଚିକା ମୁହିଁତ ନଜାଣେ
ମଞ୍ଜରିକା ମାତ୍ର ଯାହା ସେ ରଚିକା ଠାଣେ ।

କିଏ ସେ ଯେ ରଙ୍ଗିଗଲା ଚାରୁ ଫୁଲ ଡାଳ,
ପ୍ରୌଢ଼ରସେ ଶାନ୍ତିମୟ ଚତୁର ବଦନେ,
କର୍ମଠତାଭର ଯେସନ୍ତେ ଗିରି ଦିଏ ଢାଳ,
ସ୍ରୋତସ୍ୱିନୀ ବକ୍ଷେ ସ୍ରୋତଧାରା ଘନଘନେ ।
କିଏ ସେହୁ ମଞ୍ଜରିକା ମୁହିଁତ ନ ଜାଣେ
ମଞ୍ଜରିକା ମାତ୍ର ଯାହା ସେ ରଚିକା ଠାଣେ ।

କଏ ସେଯେ ଚହିଗଲ ଗୃରୁ ଗୃଳ ଗୃଳ,
ବୃଦ୍ଧର ସେ ଲୋଳ ଚର୍ମ, ବିଶୁଷ୍କ ବଦନେ,
ସକରୁଣ ଶୁଷ୍କ ହାସ୍ୟ; ( ଅଶ୍ରୁଧାର ଢାଳ )
ଶୁଷ୍କ ଦୁର୍ବାଦଳ ଯଥା ଶିଶିରପତନେ,
କଏ ସେହି ସୁରଚକା ମୁର୍ଦ୍ଧିତ ନ ଜାଣେ—
ମରୀଚିକା ମାତ୍ର ଯାହା ସେ ରଣବା ଠାଣେ ।

( ୨ )

ଯୌବନର ଅଟ୍ଟହାସେ ହେ ପଥିକ ପ୍ରେମ-ତୃଷାତୁର,
ପଡ଼ୁଛୁ ଝାଉଁଳି ଯେବେ ଅଗ୍ରସର ହୁଅରେ ଚାତୁଳ !
ମାର୍ଗ ଏହ ଅଶାବ କୁହୁକ
ଶୁଷ୍କ ଯାହା ମାୟାର ନୂମ୍ବକ —
ସମାକର୍ଷି ବୃଷ ଏଥି, ଦମ୍ଭ ଧର ମନରେ ଅତୁଳ—
ଲକ୍ଷ୍ୟ ତୋର ଯାଅ ଚୂଳ ସ୍ଥିର ଭାବେ ଅଚଳ ଅଟଳ ।
ଚର୍ହ୍ନି ତୋର ମେଣ୍ଟିବ ପିପାସା,
ଅନ୍ୟ ଦିଗେ ନ ବଳାଅ ଆଶା,
ଯେଣୁ ସେ ସଲିଳ ତୋତେ ଦେଖାଦେଉ କରବ—
ମରୀଚିକା ମାତ୍ର—ତାହା ବୃଥା ସବୁ ନ ଭୁଲ ତତ୍ପର ।

ଶ୍ରୀନିତ୍ୟାନନ୍ଦ ମହାପାତ୍ର ।



# ଦେଶ ଓ ଜାତି

( ୧ )

ଅଂଶୁମାନ୍ ଦୀପ୍ତିମାନ୍ ରଶ୍ମି ବିକିରଏ,
ବଇଶାଖୀ ରୌଦ୍ର ତାପେ ଧରା ଝଲସାଏ ।
ରିକ୍ତ ହସ୍ତେ ଘର୍ମସିକ୍ତ ପଥିକ ଏକାକୀ
ଚଳେ ଲକ୍ଷ୍ୟସ୍ଥଳେ ଧୀରେ ନିଜ ରାହା ଚାକି ।
ତୃଷାତୁର, ଘନ ଘନ ବହଇ ନିଃଶ୍ୱାସ
ମୃତ୍ୟୁଞ୍ଜୟ ମୂହୂର୍ତ୍ତିରେ ସଞ୍ଚାରେ ତରାସ ।
ଦୂରେ ଦେଖି ବାଲି ରାଶି—ରଶ୍ମି ପ୍ରତିଫଳେ
(ଯାହା) ସାଗରେ ତରଙ୍ଗ ସମ ଭ୍ରମ ଥାଶ ଜଳେ,
ଆଶାନ୍ୱିତ ଯାତ୍ରୀ ଧାଏଁ ବାରି-ପାନ-ଆଶେ
ଦ୍ରୁତ ନିଜ ପଥ; ମାତ୍ରଦେଖେ ଅବଶେଷେ—
ଜଳ ନୁହେଁ ତପ୍ତବାଲି-ବାଷ୍ପିକା ମୟ;
ଚିତ୍ତ ତୃପ୍ତ ହେବ କାହିଁ ? ଦୁଅଇ ଅଥୟ ।
ମାୟା-କୁହୁକିନୀର ଏ ଲୀଳା ପରିଚିତ
ମରୀଚିକା ମାତ୍ର ନାମେ ଜଗତେ ବିଦିତ ।

( ୨ )

ପ୍ରତିଦିନ ପ୍ରତିକ୍ଷଣେ ନବ ନବ ବେଶେ
କଳ୍ପନା ସୁନ୍ଦରୀ ରାଜେ ମାନବ-ମାନସେ ।
ଘଡ଼ିକେ ନନ୍ଦନବନ ମର୍ତ୍ତ୍ୟେ ଉପୁଜାଇ,
ମରୁବକ୍ଷେ ସୁଶୋଭନ ଉଦ୍ୟାନ ରଚଇ ।

କିନ୍ତୁ ସିନା ସବୁଚକ ବହୁରୂପୀ ରଙ୍ଗ,
ବଇଶାଖୀ ଝଞ୍ଜାବେଳେ ମରୀଚିକା ଢଙ୍ଗ ।
ସରସ ବସନ୍ତ ଶର ନ ସଜେ ଧନୁରେ,
ଉତ୍ତପ୍ତ ନିଦାଘ ଅନ୍ତେ ବାରି ଧାରା ଝରେ ।
ପ୍ରକୃତି ପରିବର୍ତ୍ତି ସମ ଅନିବାର
ଧନ, ଜନ, ମାନ, ଦାରା, ପୁତ୍ର,ପରିବାର—
ସରବେ ଅନିତ୍ୟ, ଧନେ ମୃତ୍ୟୁ କବଳରେ
ପଡ଼ିବେ ନିଶ୍ଚିତ୍ତ, କେହି ଅନ୍ୟଥା ନକରେ ।
'ମୋର, ମୋର' ବୋଲି ଯାକୁ କହଇ ସଂସାର
ମରୀଚିକା ମାତ୍ର ତାହା କେ ବୁଝିବ କାହାର ।

( ୩ )

ଶେଫାଳୀର ରୂପ ଅହା କିବା ମନୋହର
ପରିମଳ ବିତରଣେ ବାସ ସୁମଧୁର ।
(କିନ୍ତୁ) ସନ୍ଧ୍ୟେଫୁଟି ସକାଳେ ତା ଲୋଟେ ମହୀତଳେ,
(ଯଥା) ନବୋଦିତ ସୂର୍ଯ୍ୟ ଲୁଚେ ମେଘ ଆଡ଼ୁଆଳେ ।
ଶିଶୁଟିର ଦରହାସ ଦରେଟି ବଚନ
ଯୁବକର ପ୍ରେମସିକ୍ତ ଉଦ୍ଦାମ ଯୌବନ ।
ବିଦ୍ୟୁତର ଆଭା ଅବା କୋକିଳ କୂଜନ
ଏ ସକଳ ସିନା ମାୟା-ସୃଜନ କଳ୍ପନା ।
ମରୀଚିକା ସମ ସବୁ ଉଭାଏ ନିମିଷେ
ଡୁବାଇ ଉଦ୍‌ଭ୍ରାନ୍ତ ଚିତ୍ତ ଅଶେଷ ନୈରାଶ୍ୟେ ।

( ୪ )

ଦୁର୍ଦ୍ଦାନ୍ତ ପ୍ରତାପବାନ୍ କାହିଁ ସେହି ରୋମ
କମ୍ପୁଥିଲା ଯବେ ଯାର ତେଜେ ମର୍ତ୍ତ୍ୟ ବ୍ୟୋମ !
ଢାଳିଲେ ଯବେ ଜଗତେ ଉନ୍ନତିର ଭାତି
ଯେଉଁ ଉଜ୍ଜପୁର ଲୋକେ, କାହିଁ ସେହି ଜାତି ?
କେଉଁ ରସାତଳେ ଆଜ ପଡ଼ିଛି ଭାରତ—
ଜ୍ଞାନଦୀପ ଯେନ ଜଳନ୍ତି ଦେଖାଇଲା ପଥ ।
ଆଧ୍ୟାତ୍ମିକ ମାର୍ଗେ ହୋଇଥିଲା ସେ ଅଗ୍ରଣୀ
ଦାସତ୍ୱ ବଂଧନେ ସେହି ହୁଏ ଆଜ ଝାଣି
ଉତ୍ଥାନ ପତନ ସବୁ ମହାଶକ୍ତି ପର
'ଆଜ ଯେ ରାଜେନ୍ଦ୍ରାସନେ କାଲି ସେ ଭିକାରୀ ।'

ଶ୍ରୀ ରମେଶଚନ୍ଦ୍ର ମହାନ୍ତି ।



# ଶୁଣିବ କି ଭାଇମାନେ !

—୧—

ବସନ୍ତ ପବନ ଆସି ଧୀରେ ଧୀରେ ବହିଲା
ତରୁ, ଲତା, ବନ, ଗିରି, ନବବେଶ ଧରିଲା ।
ଏ ନୂଆ ସମୟେ ସବୁ ନୂଆ ନୂଆ କଥା—
ନୂଆ ନୂଆ କାମ, ପୁଣି ନୂଆ ନୂଆ ପ୍ରଥା ।
ଆଜ ଏକ ନୂଆ କଥା ଶୁଣିଲି ଶ୍ରବଣ
"ମସ୍ତଣିକା ମାଜ" ଏକ କବିତା କରଣ—
( ଭାଇମାନେ ) ଦେଖାଇବ କର୍ମି ସମ୍ମିଳନୀ ଦିନ ।

ଶୁଣିବକି ଭାଇମାନେ ବାରେ ଦୟା ବହି !
ଏ ପଦ ଶେଷେ କବିତା ପଢ଼ୁଅଛି ମୁହିଁ ।
ଯେବେ ମୁଁ ଅଲକା କୂଳେ ବସି ଏକାନ୍ତରେ
(ଦେଖୁଥିଲି) ସୂର୍ଯ୍ୟଦେବ ଯାଉଛନ୍ତି ଆପଣା ଗୃହରେ ।

ଧାଇଁଲି ମୁଁ ତାଙ୍କ ପଛେ ଆଣିବ ଫେରାଇ
ତାଙ୍କ ବିଚ୍ଛେଦ ସହି ମୁଁ ନପାରଇ ସହି ।
ଏ ସମୟେ ଶୁଣି କାର ସୁମଧୁର ସ୍ୱର
ଚମକି, ଚମକି କରି ଖୋଜିଲା ନୟନ ମୋହର ।

ଦେଖିଲି ଅନେକ ଦୂରେ ବୃକ୍ଷ ଅନ୍ତରାଳେ
ପିକରାଣୀ ବସି ଗାଏ କୁହୁ କୁହୁ ସ୍ୱରେ ।
ଶୁଣି ସେ ସଙ୍ଗୀତ, କ୍ରୋଧେ ମୋହର ହୃଦୟ
ଥରି ଉଠିଲା—ତେଣୁ ମୁଁ ହୋଇଲି ଅଥୟ ।

ଭାବିଲି ମୋ ସମ ଗାୟକ ନାହିଁ ଏ ଅଞ୍ଚଳେ
ଏ କେଉଁ ଦେଶୁଁ ଆସିଲା ଭଣ୍ଡିବାକୁ ମୋରେ !
ତେଣୁ ଖୋଲି ଦେଲି ମୋର ରୁଦ୍ଧ କଣ୍ଠଦ୍ୱାର
ଯୁଝିଲି ତାଙ୍କ ସଙ୍ଗତେ ଗୋଟିଏ ପ୍ରହର ।
ଯୁଝି ଆଶା ବିପରୀତ ଫଳ ମୁଁ ପାଇଲି,
ସର୍ବଶେଷେ 'ପ୍ରହେଳିକା ସତେ' ମୁଁ ବୁଝିଲି !

ଶ୍ରୀ ଗିରୀଶଚନ୍ଦ୍ର ବୋଷ



# ଜୀବନ-ଯାତ୍ରା

—୧—

ଧୀରେ, ଧୀରେ ହରିତାଶ୍ୱ ବିଜେକଲେ ଅସ୍ତାଚଳ ଶିରେ
ସନ୍ଧ୍ୟାଦେବୀ ଅଞ୍ଚଳ ସଞ୍ଚାଳି ଧୀର ସୁବାସ ସମୀରେ,
ବିଜେକଲେ ଧରା ବକ୍ଷେ, ଅନ୍ଧାରିତ ହେଲା ମହୀ
ବୃଦ୍ଧ ଏକ, ବସି ନୀଳ ପାରାବାର ତୀରେ ଭାବିଲା
"ମୋର କି କେହି ନାହିଁ" ?

ପଡ଼ି ଗଲା ମନେ ତାର ଅତୀତର ସୁମଧୁର କଥା
ବାଲ୍ୟ କାଳେ, ମାତୃକୋଡ଼େ, ପରିଜନମେଳେ ବସି
ଦୁଗ୍ଧପାନ କରୁଥିଲା କି ମଧୁରେ ହସି, ମୋହୁଥିଲା ସର୍ବହୃଦ ।
ପାପ ତାପ ଲେଶମାତ୍ର ପରଶି ନଥିଲା,
ଅମୃତ ସନ୍ତାନ ବୋଲି ଜଗତ ଘୋଷିଲା ।

କ୍ରମେ ପଞ୍ଚମ ବରଷ ପ୍ରବେଶେ, ଗଲା ସେହୁ ବିଦ୍ୟାଳୟେ
ସର୍ବୋତ୍କୃଷ୍ଟ ଛାତ୍ର ବୋଲି ବୋଇଲେ ଶିକ୍ଷକ—
ନାନା ପୁରସ୍କାର ଉପାଧିରେ ଅଲଙ୍କୃତ ହୋଇ
ଧନେ, ନିଜେ ବୋଲାଇଲା ପରୀକ୍ଷକ ।

ଏହି ପରି ବିତିଗଲା ଅର୍ଦ୍ଧେକ ଜୀବନ
ଯୁବକ ଘୋଷିଲା ତାକୁ ଏ ବିଶ୍ୱ ଭୁବନ ।

ଭାବିଲା ଧରାକୁ ସରା, ନାହିଁ ମୋ ର ପର କେହି
ପାଛୁ ନିଜ ମନେ, ପାପର ପଙ୍କିଳ ପଥେ
ଗଲା ସେ ତ ବହି ।

ମନେ କଲା ଯୁବକ ମୁଁ,
ଯେତେ ଦିନ ସୂର୍ଯ୍ୟ, ଚନ୍ଦ୍ର ବ୍ୟାପିବେ ଭୁବନ
ତେତେଦିନ ରହିବ ମୋ ଏ ମଧୁ ଯୌବନ
(ଚାର) କେତେ ସଖା ଯୁଟି ଗଲେ, ହେଲେ ଅନ୍ତରଙ୍ଗ —
ସଖାମେଳେ କେତେ କାଳ କଲା କେତେ ରଙ୍ଗ,
କ୍ରମେ କ୍ରମେ ତା ଶରୀର ବାର୍ଦ୍ଧକ୍ୟ ଗ୍ରାସିଲା
ଅର୍ଥଶୂନ୍ୟ ହୋଇ କ୍ରମେ ଶଖାଶୂନ୍ୟ ହେଲା ।
ଗୃହଶୂନ୍ୟ ହୋଇ ଶେଷେ ବୁଲି ନାନା ଦେଶ
ଅସିଛି, ସାଗରତୀରେ ଯାପିବ ତା' ଜୀବନର ଶେଷ ।
ଅତୀତ-ଜୀବନ୍-କଥା ହୋଇଲା ସମାପ୍ତ,
କହିଲା ଗମ୍ଭୀର ସ୍ୱରେ, ଶୁଣିଲ ଯୁବକ ମୋ ଯୌବନର କଥା ।
ଯୌବନ ମୋହରେ ପଡ଼ି କଳଙ୍କିତ କର ନା ମୋ ଗାନ୍ଧ
ଯୌବନଟା ସିନା ଖୁର ମାୟାଜାଲ ମାତ୍ର ।
ଯଦି ଶାନ୍ତି ଲଭିବୁ ତୁ ଏ ମର ଜୀବନେ—
ଅଖିଳ ବ୍ରହ୍ମଣ୍ଡନାଥେ ଅର୍ପିଣ ଜୀବନେ ।
କରିଯାଅ କାର୍ଯ୍ୟ
ଶେଷେ ଲଭିବୁ ଅନନ୍ତ ଐଶ୍ୱର୍ଯ୍ୟ ।

ଶ୍ରୀ ପ୍ୟାରୀଶଙ୍କର ରାୟ ।



# ମୋ ଦୋଷ ନ ଘେନ

—୧—

ପୂରୁବକୁ ମିଶାଇବ ପଶ୍ଚିମ ସଙ୍ଗରେ
ରବି ଉଦେ କରାଇବି ପୁଣି ସେ ଦିଗରେ । ୧ ।
ଆକାଶ ପାତାଳ ଏକ ମେଳେ ମୁଁ ରଖିବ
ଫାନ୍ଦ ପାତି ପବନକୁ ସଜୋରେ ବାନ୍ଧିବ । ୨ ।
ଶଶାଙ୍କ କରିବ ଉଦେ ଅମା ରଜନୀରେ,
ନର୍ଝର ସାଗର ଶୁଖାଇବ ସେହ୍ନି କରେ । ୩ ।
ଭୂଧର ଶିରେ ମୁଁ ଫୁଟାଇବ ସରୋଜନୀ
ତା' ଜଳଧାରେ ଛେଦିବ (ମୁଁ) ମହାଦ୍ରୁମ ପୁଣି ।୪।
କ୍ଷଣପ୍ରଭା ସ୍ଥିର କରାଇବ ଗଗନରେ
ନିମ୍ନଗାକୁ ବୁହାଇବ ମୁଁ ଊର୍ଦ୍ଧ୍ୱ ଦେଶରେ । ୫ ।
ମହାଶ୍ରମେ ଫୁଟି,ଶ୍ରାନ୍ତ ହେଲି ଉଦ୍‌ବେଗରେ
କଲପନା ମାତ୍ର—ଶେଷେ ମଜିଲି ଫଳରେ । ୬ ।
ଜନନୀର ଯେଣୁ ଦୟା ନାହିଁ ଅଧମରେ
ଲୁଣ୍ଡ ମୁଁ ପଶିଲି ଲୋଭେ କବିତା କୁଞ୍ଜରେ । ୭ ।
ଶ୍ୱେତ ପଦ୍ମ ତବ ତର ଡୋଲି ସେ କୁସୁମ
ଇତସ୍ତତେ ଗୁନ୍ଥିଲି ମୁଁ, ନାହିଁ ତାରତମ୍ୟ ।୮ ।
ମହାସନ୍ ଆଦରେ ମୋ ଗୁନ୍ଥାହାର ଘେନ
କୃତାଞ୍ଜଳି ପୁଟେ ଅର୍ପେଁ-ମୋ ଦୋଷ ନଘେନ ।୯।

ଶ୍ରୀବାଞ୍ଛାନିଧି ମହାନ୍ତି ।



## ଚାନ୍ଦ

ବସି ସେ ଏକାନ୍ତେ — ଭାବେ କେତେ କେତେ
ଯେବେ ସୁଖ ଦୁଃଖ କଥା ମାନ
ଅସୀମ ସୁଦସ୍ତ ଦବ୍ୟ ବେଶ ଧରୁ
ଦେଉ ମସ୍ତୀଚକା ଦରଶନ । ୧ ।

କେବେ ଆଶାବାଣୀ ଭପୁର ସରଣୀ
ଦେଖାଉ ତୋ ଇଚ୍ଛାରୂପ
ଖୋଲିଲେ ନୟନ — କରୁ ପଳାୟନ
ଦେଇ ମନେ ବୃଥା ତାପ । ୨ ।

ଦାବିଲେ ତୋ କଥା — ହୁଏ ମନେ ବ୍ୟଥା
ବଢ଼ିଅଛୁ କେଉଁ ବନ୍ଧ
କେତେ ରୂପ ତୋର ଅକଳନ ମୋର
ଦଅ ଯନ୍ଧ ପାର କନ୍ଧ । ୩ ।

(କଏ) ଭାବୁ ଅଛୁ ମନେ — ବସି ଦିବ୍ୟ ଧ୍ୟାନେ
ହେବ ବୋଲି ନରଞ୍ଜଣ
(କଏ) ସିନ୍ଧାଦଳୁ ଯାଇ — ବନରେ ଭ୍ରମଇ
ଝିଙ୍କବନର ଅଶ । ୪ ।

(କଏ) ବଡ଼ ବଡ଼ କଥା — କହ ଦେଇ ମଥା
ହଲାଇଣ ବେଦ ବାକ୍ୟ
ଆଦରଣ ଅବା — ଦେଖାଇଣ କେବା
ହେବା ପାଇଁ ବକ୍ତା ବାହ୍ୟ । ୫ ।

ହେଉ ଅନାଦର— ଶୁଣା ଯାଉ ଦୂର
ଯବେ ନାହିଁ ତାହା ଛଳେ,
ମଣିଚକା ଚୋର— ରୂପ ପ୍ରଭାକର
କହୁସିନା ଏହା ବଳେ । ୬ ।

ଯାଉଛୁ ବାଟୋଇ ଯାଉ ନାହିଁ କେହି
ଖାଲି ନଜ ଦୂର ପଥ:
ଧୂଳି, ଧୂଳି ହୋଇ— ନଥିଁ ବରଷଇ
ପ୍ରଚଣ୍ଡ ରଞ୍ଜିଦ୍ର ତାପ । ୭ ।

ତୁଛ ମଣିଚକା— ସାଥି ହେଉ ଏକା
ଦେଇଣ ସ ହସ ମନେ
ହେନ ଯାଉ ସିନା— ନକରି ବିମନା
ଧୂଳି ବୁଲୁ ଥାଉ ବନେ । ୮ ।

ବୀର ଧନୁର୍ଦ୍ଧର— କୌଶଳୀ ପ୍ରବର
ଉଦଯୋଗୀ ନରଧ୍ୱଜ
ନୀଚ ମଣିଚକା— ଉପୁଜାଉ ଶଙ୍କା
କଳ୍ପଦେଉ ବୁଡ଼ ବକ । ୯ ।

ଯେପନ୍ନ କୋଳେ ନାଚ— ବୁଡା ବୁଢ଼ୀ ନଚ
ଫେଳନ୍ତୁ ଧୁମର ଦେବ
ଯୁବକ ଯୁବତୀ— ହରଷେ ମାତନ୍ତୁ
ଗାବ ନୂଆ ନୂଆ ଗାବ । ୧୦ ।

କୃପଣ ଧନୀକ— ସ ଗରେ ବଣିକ
ଗାଳ ଧନ ଦଉଲତ

ଦୁଷ୍ୟନ୍ତ ଅସ୍ଥିର— ହୁଏ ଯେବେ ମୂର
ଚିନ୍ତ ମହିଶକା ଶତ । ୧୧ ।
ମହଶକା ଡୋର— ଛିଡ଼ ଖେଳଘର
ଜାଣି ନଜାଣନ୍ତ ଲୋକେ
ଭୟରେ ତୋହର— ପାଇଁ ବନଗିର
ଚଳୁଥାନ୍ତ ବନ୍ଧ ଥୋକେ । ୧୨ ।
ମହିଶକା ଗୁଣ— ଗୁଣି ଦେବଗଣ
ସୁମରନ୍ତ ପ୍ରଜାପତି
ଲଭିଣ ଜନମ— ମହୀରେ କରମ
ସାଧିନେବେ ବୋଲି ଖ୍ୟାତ । ୧୩ ।
ଧନ୍ୟ ନହିଚକା— ଅଛୁ ତୁହି ଏକା
ବିଧାତା ଭିଆଣେ ସାର
କୁହୁକେ ଯାହାର— ଭୁଲି ସୁର ନର
ନନ୍ଦନ୍ତ ଭାଗ୍ୟ ଚକର । ୧୪ ।
ମହିଶକା ମନ୍ତ୍ର— ସଂସାରେ ଅଥୟ
ନହୁଅ ବୃଥାରେ ଭାଇ
କାଶୀବାସୀ ଜନ— ଚିନ୍ତ ଦିନରାତି
କରିବେ ମୁକତି ପାଇଁ । ୧୫ ।



ଶ୍ରୀ ବିଶ୍ୱନାଥ ହୋତା ।

# ବନ୍ଦୀର ସ୍ୱପ୍ନ ।

ଅନ୍ଧକାରେ ବନ୍ଦୀଭାବେ ଥିଲି କାରାବାସେ
ଅଦ୍ଭୁତ ସ୍ୱପନ ଏକ ଦେଖିଲି ରଭସେ । ୧ ।
ଚେତନ ହେଲୁ ମୋର ଶୂନ୍ୟର ମଧ୍ୟର
ଜଳପାଇ ଯେସନ୍ତ ଉଡ଼େ ଖଞ୍ଜଣ ପ୍ରକାର । ୨ ।
ଦେଖି ଦଗ୍ଧପ୍ରାଣ ମୋର ହୋଇଲା ଅସ୍ଥିର
କେ କହିବ ବୋଲି ମୁଖୁଁ ନ ସ୍ଫୁରେ ଉତ୍ତର । ୩ ।
ଅଚାକ ସବାସ୍ଥ ମୁହିଁ ରହି କିଛି କ୍ଷଣ,
ଡାକ ଡାକି ଜନନୀକୁ—ଜଳିଲା ମୋ ପ୍ରାଣ । ୪ ।
କାହିଁ ଗଲ ଜନନୀ ମୋ—କାହିଁ ଗଲା ଘର !
କାହିଁ ଗଲା ପ୍ରେୟସୀ ମୋ ! ହେଲା ଛାରଖାର । ୫ ।
ଦେଖି ମୋ ସୋଦର ମାନେ ହୋଇ ଆଚମ୍ବିତ
ବୋଇଲେ ଢ଼ଳିଣ ବାଣ କର ତୁ ନିବୃତ୍ତ । ୬ ।
ତେଣୁ ମୁଁ ଘେନିଲି ହସ୍ତେ ସ୍ୱର୍ଣ୍ଣର କଳସୀ
ଜଳ ନେଇ ପିବା ଅର୍ଥେ ହେଲି ଅଭିଳାଷୀ । ୭ ।
ନପାଇଲି ଜଳ କାହିଁ ନ ପାଇଲି ସ୍ଥଳ
ନଦେଖିଲି କାହିଁ ମୁହିଁ ସିନ୍ଧୁନଦୀ କୂଳ । ୮ ।
ନପାଇଣ କାତରେ ମୁଁ ଥଇଲି ପଳାଇ
ପଥେ ଏକ ଦିବ୍ୟ ନାରୀ ପଥ ଓଗାଳଇ । ୯ ।
ପ୍ରେମେ ମତ୍ତ ହୋଇ ପ୍ରେମେ ଧରି ନେବା ପାଇଁ
ପ୍ରେମ ରଜ୍ଜୁ ଧରି ହସ୍ତେ ଅଛି ସେ ଅନାଇ । ୧୦ ।
ବ ଛାଡ଼ ବୋଲି କି ପଥ ଓଗାଳିଲ ମୋତେ
ନୀରବ ଭାବେ କ୍ଷଣେ କି ଭାବିଲା ତା' ଚିତ୍ତେ । ୧୧ ।

ପ୍ରେମ ଉନ୍ମାଦନା ସେହ୍ନ ମୁକୁଳିତ କେଶୀ
ଇଙ୍ଗିତ ବଚନେ ମନ୍ଦ ମୃଦୁବାଣୀ ଭାଷି । ୧୨ ।
ମୀରବ ନୟନେ ସ୍ୱରବ ମସ୍ତକ ନୁଆଇଁ
ରହିଲା ସେ କଛୁକ୍ଷଣ ଲାଜେ ଠିଆ ହୋଇ । ୧୩ ।

ଦେଖି ତାର ଉନ୍ମାଦିତ ମୁକୁଳିତ ବେଶ
ପ୍ରେମମୟ ପ୍ରେମଭାବେ ହୋଇଲି ଅବେଶ । ୧୪ ।

ଦେଖି ମୋର ରୂପ ଛବି କ ଭାବିଲା ମନେ
କାଣି ନେଇ ମୋ ହୃଦୟ, ଗୁହିଁଲା ନୟନେ । ୧୫ ।

ଇଙ୍ଗିତ ଭାବେ ଗାଇଲା ପ୍ରବୀଣ ସଙ୍ଗୀତ
ଅବେଶ କରାଇ ମୋତେ, ଛାଡ଼ିଦେଲା ପଥ । ୧୬ ।

ମୃଗ ତୃଷ୍ଣା ଟଣି, ମୁହିଁ ହୋଇଣ ଅଧୀର
ପଛେ ପଛେ ଗୋଡ଼ାଇଲି, ବାମନ ପ୍ରକାର । ୧୭।

ନ ପାଇଲି ଦେଖା କାହିଁ ନ ପାଇଲି ଭେଟ
ମିଳିଗଲା ମୋତେ ସେହ୍ନ ସିନ୍ଧୁ ନଦୀ ତଟ । ୧୮ ।

ଖର ତର ହୋଇ ଯହିଁ ବହୁଛି ଯମୁନା
ନାହିଁ ତାର ବାଧା କେହ୍ନ ତରଙ୍ଗ-ରଚନା । ୧୯ ।

ସେ ଯମୁନା ଖରତରେ ବୋହି ଯାଏ ଆଜ
ସାମାନ୍ୟ ମାନବ କବା ଦେଖି ଥିବେ ମଜ୍ଜି । ୨୦।

ମାନସ ମାନସ ଭାବେ ଝେଳୁଛନ୍ତି ରଙ୍ଗେ
ଲହରୀ ବତାସେ ଖେଳେ ମାନସୀର ସଙ୍ଗେ ।୨୧ ।

ଉଡ଼ାଇ, ପଡ଼ାଇ ଧୀରେ ଲହରୀ ବତାସ
ରବି ତେଜେ ଦିଶୁଥାଇ କେଡ଼େ ସୁଶୋଭନ ।୨୨।

'ଯେଉଁ ରବ ଉଦେ କାଳେ ପୂର୍ବଦିଗୁଁ ଫେର
ଆକାଶ ପାତାଳ ସମ ସୌନ୍ଦର୍ଯ୍ୟ ଆବେଶ ।୨୩।

ଯୋଃଟିପାଏ ହେଙ୍ଗୁଳରେ କି ଶୋଭା ବେଶ
ଯାକୁ ଦେଖି କବିଗଣ ହୋଇବେ ମୋହିତ । ୨୪ ।

ସେ ଦିବ୍ୟ ସୌନ୍ଦର୍ଯ୍ୟ ଦେଖି ହୋଇ ବିହ୍ୱଳିତ
ପ୍ରେୟସୀର ପ୍ରେମ ଭାବ ଜନ୍ମିଲା ବହୁତ । ୨୫ ।

ପ୍ରେୟସୀର ପ୍ରେମ ଭାବ ଜାଳ ଦେଲା ମୋତେ
ମୂର୍ଚ୍ଛାଗତେ ପଡ଼ିଲି ମୁଁ ପ୍ରେମ ଅନାପ୍ତରେ । ୨୬।

ସ୍ୱପ୍ନେ ସ୍ୱପ୍ନେ ନିମିଷକେ ହେଲି ଅଚେତନ
ଏ ସମୟେ ପଡ଼ିଲା ମୋ ହସ୍ତରେ ବନ୍ଧନ । ୨୭।

ନିଦ୍ରା ଭଙ୍ଗ ଚେତ ଉଠି ଦେଲି ମୁଁ ଅନାଇ
ଦେଖିଲି ସମ୍ମୁଖେ ଉନ୍ମାଦିନୀ ଠିଆ ହୋଇ । ୨୮।

ଧରିଅଛି ସ୍ୱହସ୍ତରେ କୁସୁମ ସମ୍ଭାର
ଦେବ ବୋଲି ଆଣିଅଛି ମୋତେ ଉପହାର ।୨୯।

ବୋଇଲି କପାଁଇ ବନ୍ଦୀ କି ଭାବୁଛ ମନେ
କପାଁ ଚେତ ଉଠିଲୁ ତୁ କି ଦେଖି ନୟନେ ।୩୦।

ଶୁଣି ସେହି ରମଣୀର କୋମଳ ବଚନ
ଶୀତଳ ହୋଇଲା ପ୍ରାଣ ଯେସନେ ଚନ୍ଦନ । ୩୧ ।

କି କହିବି ବୋଲି ମୁଁ ଖୁଁ ନ ଫୁଟିଲା ବାଣୀ
କଣ୍ଠ ରୁଦ୍ଧ ହୋଇଗଲା ଦେଖି ତାର ଠାଣି । ୩୨।

ବୋଇଲା କପାଁଇ ବନ୍ଦୀ ତୋ ମୁଖ ମଳିନ
କିଆଁ ବନ୍ଦୀ ଭାବେ ଥାଇ ହେଉ କ୍ଷୀଣମାନ । ୩୩ ।

ହୁନା ଦେହ ହୁନା କରୁ କେଉଁ ଲାଳସାରେ
କହ ବନ୍ଦୀ — କହ ସତ — କହ ମୋତେ ବାରେ ।୩୪।

ଦେଖି ତୋର ବନ୍ଦୀଭାବ, ଦେଖି ତୋର ମୁଖ
ଆସିଅଛି ତୋର ପାଶେ ଦେବାଲାଗି ସୁଖ । ୩୫।

ବସି ମୁହିଁ ତୋର କୋଳେ ଶୁଣାଇଁ ସଙ୍ଗୀତ
ତ'ହେବ ତୋ ଦୁଃଖରାଶି ତାହାର ଅମୃତ । ୩୬।

ଶୁଣି ସେହ ସୁନ୍ଦରୀର ଆଶ୍ୱାସନା ବାଣୀ
ତେଜିଲା ଶୋକ ସନ୍ତାପ ମନୁ ସେହିକ୍ଷଣି । ୩୭।

ବିକଚ କୁସୁମ ଶୋଭା ନିରେଖି ଭ୍ରମର
ମଧୁ ଲାଳସାରେ ଯେସନେ ହୁଅଇ ଅସ୍ଥିର ।୩୮।

ସେ ଭାବ ଭାବଣ ହୃଦେ କହିଲା ପ୍ରିୟକୁ
ପ୍ରେମ ଅଭିଳାଷେ ଆସ ଆସ ମୋ କୋଳକୁ । ୩୯।

ଆସ ଆସ ଗୋ ପ୍ରେୟସି, ବସ ମୋର କୋଳେ
କର ଆଲିଙ୍ଗନ ମୋତେ ପ୍ରେମମତ୍ତ ହେଲେ । ୪୦ ।

ପ୍ରାଣ ମୋର ଜଳଉଠେ ଜଳାଅଗ୍ନି ପର
ଶୀତଳ କର ପ୍ରେୟସି ଢାଳି ସୁଧା ଧାର । ୪୧ ।

ଦେରେ ଶୁଣାଇବ ତୋତେ ମୋ ହୃଦ ବେଦନା
ବସି କୋଳେ ପ୍ରେୟସୀ ଗୋ, ପୂରାଅ କାମନା ।୪୨।

କମ୍ପେ ତନୁ ଅସମ୍ଭାଳେ କଣ୍ଠେ ରହି ପ୍ରାଣ
ଜଳିଯାଉ ରବତେଜେ ହୋଇଛି ପାଷାଣ । ୪୩ ।

ବୋଇଲା ନଭାବ ବନ୍ଦୀ ନ ଭାବ ତୁ ଆଉ
ନ କର ସନ୍ତାପ ନଷ୍ଟେ ଯିବ ଦୁଃଖ ଦାଉ । ୪୪।

ଲୁଟାଇ ଶୋକ ସନ୍ତାପ ଗାଅ ହେ ସଙ୍ଗୀତ
ବେଦନ ଜନେ ପ୍ରେମ ରସେ ହେଉବା ମୋହିତ । ୪୫ ।
ଶୁଣିଣ ସଙ୍ଗୀତ ମାନ ନହୋଇ ଅସ୍ଥିର
ତୁମେ ମତ୍ତ କରାଇଣ ଦୁଃଖ କଲ ଦୂର । ୪୬ ।
ବୋଇଲ୍ ସେ ଆସ ବନ୍ଦୀ ଯିବା ଦୁହେଁ ଉଡ଼
ଆଣିଛୁ ଶୂନ୍ୟ ବିମାନ ଆସ ଯିବା ଚଢ଼ି । ୪୭ ।
ପ୍ରେମେ ମତ୍ତ ହୋଇ ମୁହିଁ ଆବୋହିଲି ହୋଇଲି
ଫିଟିଗଲ ମୋ ବନ୍ଧନ ପଡ଼ିଲ ମୁଁ ତଳେ । ୪୮ ।
ଫାଟିଗଲ ମୋ ମସ୍ତକ ବହିଲ ରୁଧିର
ଭାଙ୍ଗିଗଲା ମୁଖ ସବୁ—ସ୍ୱପନ ସମ୍ଭାର । ୪୯ ।

ଶ୍ରୀବିପିନଚନ୍ଦ୍ର ସାହୁ ।



# କାଗ କୋକିଳ—

## ( ୧ )

ଦୀର୍ଘ ଦି'ପହରର ପାରୁ ନାହିଁ କାଟି,
କଳ୍ପନା ଭିତରେ ହୋଇଯାଏ କାଟି ।
ଏସନ ସମୟେ କଏ ପକ୍ଷୀବର
ଢାଳିଲୁ ମୋ ପ୍ରାଣେ ଆସି କୁହୁ ସ୍ଵର ।।
ସିଞ୍ଚିଲୁ ଅଣିକ ସୁଧା ସଞ୍ଜୀବନୀ !
ପୁଲକ ଉଠିଲା ଶିଥିଲ ଧମନୀ ।
ବାଲ୍ୟ ପରିଚିତ ସଖା ମୋର ତୁହି,
ଦେଖା ତୋର ମୁଖ ; ଦେଖେଁ ଅଜ ମୁହିଁ ।।
ପିଲାଦିନ କଥା ପଡ଼େ ମୋର ମନେ
ଭେଟିଥିଲି ତୋତେ ସେ ବଉଳବନେ ।।
ଶ୍ରୀ ପଞ୍ଚମୀ ଦିନ ନେଇ ଫୁଲଡ଼ାଲା
ଯାଉଥିଲୁଁ ସବୁ ଗୁନ୍ଥିବାକୁ ମାଳା ।
ଗଛଉହାଡ଼ରେ, କୁଞ୍ଜ ଘରେ ବସି,
ଡାକଦେଲୁ—ହୃଦ ଉଠିଲା ଉଲ୍ଲସି ।
ଇଚ୍ଛାହେଲା ତୋତେ ଆଣିବାକୁ ଧରି
ଗାଇଲି ତୋ ମଧୁ କଣ୍ଠ ଅନୁକରି ।
ଲଭିଲି ମୋ ଅଙ୍ଗେ ଗୁପତ ମଳୟ;
ସେ ଦିନୁ ପିନ୍ଧିଲି ତୋ ପ୍ରୀତିବଳୟ ।
ଯାଇଛି ସେ ଦିନ ; ଲାଗେ କାଲିପରି
ମହାକାଳ ସ୍ରୋତେ ମିଶିଅଛି ଝରି ।

ଏମନ ତ କାହାରି ନଥାଏ ସମାନ
ଉତ୍ଥାନ ପତନ ପ୍ରକୃତି-ବିଧାନ ।
ଅତୀତ ଝୁରୁଛୁ ନାହିଁ ବର୍ତ୍ତମାନ
ବହି ଯାଇ ଉଠେ ଭବିଷ୍ୟତ ପ୍ରାଣ ।

× × ×

ପକ୍ଷୀରେ ! ଯେ ଦିନୁ ପଲ୍ଲୀ ଶ୍ୟାମଳତା
ଭୁଲି ମୁଁ ଚେଙ୍କଲି ପୂତ ଚପଳତା ।
ପ୍ରକୃତି-କୋଳରୁ ହୋଇଲି ଅନ୍ତର,
ଭଜିଲି ସହର ବୃଥା ଆଡ଼ମ୍ବର ।
ସେହି ଦିନୁ ତୋତେ ଦେଲି ମୁଁ ପାଶୋରି
ଶିଥିଳ ହୋଇଲା ତୋର ମୋର ଡୋରି ।
କେତେ ତୋର ପଣ ଘୋଷିଲି ଗମ୍ଭୀରେ !
ଫଳ କିଛି ବିଧି ନୋହିଲା ତହିଁରେ ।
ପ୍ରକୃତି-ଶ୍ମଶ୍ରୁତରେ ପିଇ କଲି ବାନ୍ତି,
ଚେଷ୍ଟା ସଙ୍କଟୁ ଲଭିବାକୁ ଶାନ୍ତି ।
ନବଢ଼ି ଛୁଟିଲା ତୋର ମୋର ଭାବ,
ବିକୃତ ହୋଇଲା ପ୍ରକୃତ ସ୍ୱଭାବ ।
ତୋର ପ୍ରିୟ ପକ୍ଷୀ କବି, ପ୍ରେମିକର
ହୋଇ ନପାରିଲି ଚରଣ କିଙ୍କର ;
ନ ବୁଝି ପାରିଲି ତାଙ୍କ ମନ ପ୍ରାଣ,
ଅର୍ଜିଲି ଗୁଡ଼ାଏ ଦମ୍ଭ ଅଭିମାନ ।
ଶୋଷଣ କଳରେ ହେବା ପାଇଁ ଅଣ୍ଡା
ସାଜିଲି ଗୋଟିଏ କ୍ଷୁଦ୍ର ପେଚ କଣ୍ଡା !

ଝିଣ୍ଟିକାକୁ ମାରି ପୋଷିବାକୁ ବଣି
ଗରିବଙ୍କୁ ଶୋଷି ତୋଷିବାକୁ ଧନୀ ।
ବିଶ୍ୱ ବିଦ୍ୟାଳୟ କୈଳାସ-କନ୍ଦରୁ
ତାଇ ବାହାରିଲି ସ୍ୱାର୍ଥର ଡମ୍ବରୁ ।
ଗଳାରେ ଲମ୍ବାଇ ଦାସତ୍ୱର ହାର
ମର୍ତ୍ତ୍ୟରେ ହେଲି ମୁଁ ବାବୁ ଅବତାର ।
ଆଉ ନଚାହିଁଲି ତୋ ମୁହଁକୁ ଦିନେ
ଶୁଣି ନଶୁଣିଲି ଡାକ ହୋଇ ଭିନ୍ନେ ।
ଜୀବସେବା ଲାଗି ମାନବ ଜନମ—
ଭୁଲି ଗଲି ନିଜେ ନିଜର ଧରମ ।
ଅବାଟରେ ପଶି ବୁଲିଲି ମୁଁ ଭୁଆଁ ।
ଅନୁତାପ ହେଲା ଜୀବନରେ ଧୂଆ ।
ବିଧିଦତ୍ତ ଶକ୍ତି ନ କରି କର୍ଷଣ,
ଲଭିଲି ବିଧାତା ହସ୍ତର କଷଣ ।
ରୁଚି ଅନୁକୂଳ ନକରେ ଯେ କାମ
ଭାଗ୍ୟଦେବୀ ତା'ର ହୋନ୍ତି ସତ୍ୟେ ବାମ ॥
ଅର୍ଥାଭାବ ଦୁଃଖ ସବୁ ଦୁଃଖୁଁ ବଡ଼
ମଉଳାଇ ଦିଏ ପ୍ରତିଭାର କଢ଼ ।
ଅର୍ଥହିଁ ଜଗତେ ଅନର୍ଥ କାରଣ
ଯେତେ ଅତ୍ୟାଚାର ସବୁର ବାହନ ।
ଅର୍ଥନୀତି ଯେବେ ହୋଇବ ସଂଯତ,
ବିକଶିବ ତେବେ ମାନବ ଦେବତ୍ୱ ।

× × ×

କାଲି ଅଉକବା ଗଳ କଥା ଶୁଣି
ଆସ ଧାଇଁ ତୋର ସମ୍ପୁର ପଖାଳି ।
ବନ୍ଦୀଜନ ବୋଲି ନ କର ତୁ ଘୃଣା
ବନ୍ଧୁହୀନ ଠାରେ ଦେଖା ତୋ କରୁଣା ।
ବନ୍ଧୁ ଜାଣେ ସିନା ବନ୍ଧୁର ପୀରତି
ବନ୍ଧୁ ଯୋଗେ ବନ୍ଧୁ ଲଭଇ ମୁକତି ।
ମିଳିବାରୁ ଦୁଇ ବନ୍ଧୁଙ୍କ ହୃଦୟ
ପୃଥ୍ୱୀରେ ଅଛି ଗୀତାର ଉଦୟ ।
ଅନୁଭାବୀ—ତୋତେ କହିବି ମୁଁ କସ ?
ତୋର ପ୍ରିୟ ସଖା ନଜେ ଉତ୍କଣ୍ଠଣ ।
ତାଙ୍କ ବନ୍ଧନରେ ହେଲୁ ତୁ କାତର ?
ଲୁଚି ବୁଲୁଥାଉ ମୌନବ୍ରତ ଧରି ।
କରତି ହୋଇ ତୁ ବିରହ କରରେ
ଜୀବନ୍ତ ମରଣ ହେଉ ଏ ଜଗତେ ।
ଅବସ୍ଥା ବୁଝଇ ଅବସ୍ଥାର ଦୁଃଖ,
ବିରହ ଚଖାଏ ମିଳନର ସୁଖ ।
କି କହିବି ପିକ ମୋ ଦୁଃଖ କାହାଣୀ ?
ଅନୁଭବ ବିନା ପାରିବ କେ ଜାଣି ?
ଏକେ ବନ୍ଦୀ, ଦୁଜେ ରୋଗରେ ପୀଡ଼ିତ
ବନ୍ଧୁ ବାନ୍ଧବଙ୍କ ମିଳନୁ ବଞ୍ଚିତ ।
ପୁଣି ସହାୟଙ୍କ ଠାଣ ଠାଣ ବନ୍ଦୀ
ଶୁଣି ଶୁଣି ମୋର ମଥା ହଏ ବନ୍ଧ ।
ହୋଇ ପାରେ ବନ୍ଦୀ ଖାଁ ଖୋପୁ ଭଷା
ମେଣ୍ଟିବ କି ତହିଁ ମୋ ପ୍ରାଣ ପିପାସା ?

ଜୀବନ-ସଂ-ମରୁ ଯାତ୍ରା ଯୋଗେ ଯାଙ୍କ
ମନବୀଣା ଖଣ୍ଡି ଶିଖିଲ ବଜାଇ ।
ଯା' ପ୍ରେମେ ଚିଲିକା ହୋଇ ବିମୋହିତ,
ଅବିରତ ଗାଏ ଅମିୟ ସଙ୍ଗୀତ ।
ବୋଲି ହେବା ଲାଗି ଯା ଚରଣ ଧୂଳି
ପଡ଼େ ନୀଳ ସିନ୍ଧୁ ଭକ୍ତିରେ ଉଛୁଳି,
କେତେ ଗିରି-ନଦୀ-ଗହନ-କାନନ
ଛବି ଦେଖି ଯାର ଧ୍ୟାନ ନିମଗନ ।
ଦ୍ୱିକୋଟି ମାନବ ଗୃହକୋଣି ହାତେ—
ଚୂଳୁଛନ୍ତି ଯାକୁ ନିତ୍ୟ ସନ୍ଧ୍ୟା ପ୍ରାତେ—
ସେ ଉତ୍କଳ ଭାଷା ଶୁଣିନାହିଁ ଯଦେ,
କାହିଁ ଜୀବନରୁ କଟିଗଲା ଅଧେ !
ବୁଝିବ କିଏ ସେ ଜାଣିବ ଏ କଥା ?
କା' ଆଗେ କହିବି ପକ୍ଷିରେ ! ମୋ ବ୍ୟଥା ?
ମାତାଠାରୁ ପର ମାତୃ-ଭାଷା ବଡ଼ !
ଭୁଲଇ ତାକୁ ଯେ ଜଡ଼ରୁ ସେ ଜଡ଼ ।
ଇଷ୍ଟଦେବୀ ମାତୃଭାଷା, ମାତୃଜାତି—
ତାଙ୍କ ଅନାଦରେ ଦେଶ ଆତ୍ମଘାତୀ ।
ଶତ୍ରୁ ଆସୁ ପଛେ ଜିଭ ଦିଅ କାଟି
ମାତୃଭାଷା କାର କର ନାହିଁ ମାଟି ।
ପଶୁ ପକ୍ଷୀଙ୍କର ଅଛି ନିଜ ଭାଷା
ଭାଷାହିଁ ପୂରାଏ ଜୀବନର ଆଶା ।
ଶୁଣି ମୋର କଥା ଅରେ ମଧୁମୁଖ
କହି ଚଳ ମୋର ଅଧେ କାହିଁ ଦୁଃଖ ।।

ପ୍ରିୟ ସଖା ମୋତେ କହ ସତ କଥା,
ଏତେ ବାଟ ବୁଲି ଆସିଲୁ କଠରୁ ?
ଅତଉଣା ନହେ ଯୋଜନ ଅନ୍ତର
ପ୍ରିୟ ପକ୍ଷୀ ମୋର ଉତ୍କଳ ପ୍ରାନ୍ତର ।
ବାସ, ଥିଲୁ ଭବ ମନ୍ଦିରେ ବନସ୍ତ
କି ସାହସେ ତହୁଁ ଆରମ୍ଭିଲୁ ଗସ୍ତ ।
ଭୋର ଶ୍ୟାମ ପଥେ କଲୁ କାହେ ଦାଣ୍ଡ
କାହା ନିକୁଞ୍ଜରେ ପୂର ଥିଲୁ ପେଟ ।
ଫୁଲ ମଧୁଖିଆ ରେ ଅମୃତ ଶୁଆଁ
କେଉଁ ଲତାଭାର ହୋଇଲୁ କୁଣିଆ ।
କେଉଁ ନଦୀ ତଟେ କଲୁ ତୁ ସ୍ନାହାନ
କେଉଁ ଝରଣାର ଜଳ କଲୁ ପାନ ।
କିଏ ତୋତେ ଦେଲା ଟକ୍କୁ ଅମ୍ବ ଫଳ
ଦକ୍ଷିଣା ପବନେ କଲା କେ ଶୀତଳ ।
କେମନ୍ତେ କାହାରୁ ପାଇଲୁ ସନ୍ଧାନ
ମଗଧ ପ୍ରାନ୍ତରେ ଏ ନୀଳ ଉଦ୍ୟାନ ।
ବଡ଼ ଅଚମ୍ବିତ ମଣେ ଆଜି ମୁହିଁ
ଭାତସୁତକୁ ତ'ବଳିଦେଲୁ ତୁହି !
ମୋ ସ୍ମୃତି ସ୍ତୂପରେ ରଖିଲ ଜାଗର
ଭୁଲି ପାଟକଙ୍କ ଏ ଦେଶ ପାନେ ।
ଏକେ ତ ଭାରତ ଭୁବନ ମୋହନ
ତହିଁରେ ଅମୂଲ୍ୟ ମାନବ-ଜୀବନ ।
ଜୀବନରେ ପୁଣି ଫୁଲବନ୍ଧୁ ଖେଳ
ଫୁଲବନ୍ଧୁ କାଳେ ପ୍ରାଣବନ୍ଧୁ ମେଳ ।

ସହଜ ନ ଭାଇ ଏ ସବୁ ସୁଯୋଗ
ବିନା ଉଦ୍‌ଯୋଗରେ ପଡ଼ିଛି ଏ ଯୋଗ ।।

× × ×

ଗ୍ରହ ତାରା ଖଞ୍ଜା ସୁନ୍ଦର ଗଗନ ।
ଫୁଲବାସବାହୀ ମଳୟ ପବନ ।
ସ୍ନେହ-ପ୍ରୀତି-ଭକ୍ତି-ଭରା ଜନମନ
ବିହଙ୍ଗ ସଙ୍ଗୀତ, ନଦୀ-କଳ-ସ୍ୱନ ।
ହେଗିଚକବା ଗୁଲ ଥାଉଁ ଥାଉଁ କେଳେ
ବେଳ ବୁଡ଼ି ଗଲେ ସଞ୍ଚରିବ ଖେଳ ।
ହୃଦୟେ ହୃଦୟ ଗୁମ୍ଫେ ମିଳାଇ
ଦିନ ଥାଉଁ ଥାଉଁ ଯିବାରେ ପଳାଇ ।।
ନୀଳ ଆକାଶର ନୀଳିମାରେ ବୁଡ଼ି
ନୀରବରେ ଯିବା ଦୁହେଁଯାକ ଉଡ଼ି ।
ଦ'ମାସରେ ବାଟ ଲାଗିବ ଦ'ଦିନ ।
ଦୁଇମନ ଯେବେ ରଖିବା ଅଭିନ୍ନ ।
ମନ ବଳେ କିଛି ନାହିଁ ଅସମ୍ଭବ
ସାରା ସୃଷ୍ଟି ପରା ମନରୁ ସମ୍ଭବ ।
ମନ ଗଢ଼ା ଦ୍ୱିଜ, କ୍ଷେତ୍ରୀ, ବୈଶ୍ୟ, ଶୂଦ୍ର
ମନରୁ ମରୁତ ବହ୍ନି, ବିଷ୍ଣୁ ରୁଦ୍ର ।
ବିଜ୍ଞାନ, ଦର୍ଶନ, କାବ୍ୟ କାରିଗରି
ମନ-ଝରଣାରୁ ସବୁ ଆସେ ଝରି ।
ପବନକୁ ମନ କରିଲେ ବାହନ
ଯୋଗେ ଭ୍ରମିପାରେ ଚଉଦ ଭୁବନ,

'ଯୌବନ ଶୋଣିତ ହୁଏ ଯେବେ ମତ୍ତ
'ବିଶ୍ୱରେ ଅଜ୍ଞେୟ ତା' ଲାଗି ବନ୍ଧନ !
'ମନୁଷ୍ୟ ଲୋକେ ଯାହା କରିପାରେ ବାଧ
'ଅସାଧ୍ୟ ସାଧନ କରେ ସେ ସୁସାଧ୍ୟ ।
'ଆମଠାରେ ଜରେ-ନାହିଁ ମନ-ବଳ —
'ଯୁବକ ଅଟେ କି ମହାକାଳ ଫଳ !
'ବିପ୍ଳବ ଯୁବକ ଯୁବତୀର ଧର୍ମ
ଶୃଙ୍ଖଳ ଚୂରିବା ଯୌବନର କର୍ମ ;
ଖ୍ରୀଷ୍ଟ, ମହମ୍ମଦ, ବୁଦ୍ଧ, ଚଇତନ
ଶଙ୍କର, ନାନକ, ଶ୍ରୀରାମମୋହନ ।
ଶ୍ରୀ ବିବେକାନନ୍ଦ, ଶ୍ରୀମତୀ ବେଶାନ୍ତ
ବିଶ୍ୱ ଇତିହାସେ ସଦମ୍ଭ ଦୃଷ୍ଟାନ୍ତ ।
ସରବେ ଯୌବନ ପରଶେ ବିପ୍ଳବୀ
ବିପ୍ଳବ ଆଙ୍କିଲେ ବିଶ୍ୱେ ନବ ଛବି ।
ସ୍ୱାଧୀନ ଇଟାଲୀ, ସ୍ୱାଧୀନ ଜାପାନ
ନବୋଦ୍ୟୋଗୀ ଯେଉଁ ରୁଷର ସମାନ ।
ଜାଗ୍ରତ ଆଜ ସେ ସ୍ୱାଧୀନ ଅନ୍ତର
ଫୁଟବାଲ୍ଲେ ଭିଆରେ ପେଲା ଯୁଗାନ୍ତର ।
ରସାରେ ରଷିଆ ଅଳକା ଛୁଟାଇ
ସରଗ ଶ୍ରୀ ଯେ ଆଣିଲା ଛଡ଼ାଇ ।
ସର୍ବତ୍ର — ବିଦ୍ରୋହୀ ଉଦ୍ଦାମ ଯୌବନ
ଜାଳିଛି ତ୍ୟାଗର ଜ୍ୱଳନ୍ତ ଜୀବନ ।
ଫୁତ୍କାରେ ନିଭାଇ ପ୍ରଳୟ ଅନଳ
ସାହାରା ମରୁକୁ କରିଛି ଶ୍ୟାମଳ ।

ରେଡବେରେ ଆମର ଭାବନା କାହିଁକି
ଦେଖ ଲାଗିଥିଲ ସିପାହୀ ଭାଇଙ୍କି ।
କେତେଜଣ ଅବା ଏଠା ଅସ୍ତ୍ର ଧାରୀ ?
ବ୍ରିଟିଶ ସାମ୍ରାଜ୍ୟ ଯେତେକ ଶିକାରୀ—
ନିତ୍ୟ ପିଇ ଶୁଷି ମୃଳିଆ ରକତ,
ଜଗତେ ବୋଲାନ୍ତି ଚର୍ବ୍ୱାସୀ ଭକତ !
ଯେଉଁ ତରବାରୀ, ପିସ୍ତଲ୍, ବନ୍ଧୁକ—
ପିଙ୍ଗି ଜମାଣରୁ ଭଷାକ୍ତ କନ୍ଧୁକ ।
ଚଳାଇ ସମସ୍ତ ଉଡ଼ା, ବୁଡ଼ା ତରୀ
ନ ପାରିବେ ଅମ ପଥ ରୁଦ୍ଧ କରି ।
ବେଶୀ ବଡ଼ ହେଲେ ଦେହକୁ ଆମର
ଜୀବାତ୍ମା ପାଖରୁ କରିବେ ଅନ୍ତର ।
ଫେରି ଯାଇ ଆମେ ଜନମିବା ପୁଣି
ମାତୃଭୂମି ପାଦେଶ ହେବା ନାହିଁ ଋଣୀ ।
ଯାବତ ନୋହନ୍ତି ତାହାର ମୁକତ
ଲଭୁଥିବ ଆମେ ଯାବତ ଶକତ ।
ବନ୍ଧୁଥିବା ଦୀପ ଶରୀରର ନିଃଶ୍ୱାସ
ନିଜ ପରେ ନିଜେ ରଖିବା ବିଶ୍ୱାସ ।

✕ ✕ ✕

ନମସ୍ତେ, ନମସ୍ତେ ମଧୂହୃତ କର
କହ କାଇଁ ପାଇଁ ନ ଦେଉ ଉତ୍ତର ।
ମୋ ମନ ଚନ୍ଦନ ନାଇ ଦେବ ତୋତେ,
ଅଭିମାନ ବନ୍ଧୁ କରୁ କିଆଁ ମୋତେ ?

କର ନାହିଁ ଭଲେ ତେ ର ଯାଦେ ଛନ୍ଦ
କେଉଁ କଥା ମୋର ନ ହେଲା ପସନ୍ଦ ।
ଖୋଲି କହିଲି ଯା ହୃଦୟର ଭାବ,
ଦୋଷ ଥିଲେ ଦଅ ସୁଧାରି ସ୍ୱଭାବ ।
ଦେଶ କାଳ ପାତ୍ର ରୁଚି କରି ମନ
ବାଟ ବତା ମୋତେ ମୁକ୍ତ ଅନୁକୂଳ ।
ତୋହ ପାଖେ କଲି ଆତ୍ମ-ସମର୍ପଣ
ମୋ ଜୀବନ ଆଶା କର ବୁ ପୂରଣ ।
× × ×
ଗାଆନା, ଗାଆନା ଚିକଣର ଅଭ—
ବୁଝିଲିଣି ତୋର ହୃଦ-ଦୁଃଖ-ଦାଉ ।
ଆଗ ଭବ ତୋର ନାହିଁ ଆଜ କାଲି
ଗଣଯାତ ସ୍ରୋତେ ପ୍ରାଣ ଦେଇ ଢାଳି ।
ସ୍ୱାଧୀନତା ବ୍ରତ କରିଛୁ ଗ୍ରହଣ,
ସାମ୍ୟବାଦ ତୋର ଜୀବନର ପଣ ।
ପୋଷିଅଛୁ ଆଶ ମର୍ତ୍ତ୍ୟେ ଦେଖିବାର
ସସାଗରା ଧରା ବଶ୍ୟ ପଶିବାର ।
ସଙ୍ଗୀତ ସୌନ୍ଦର୍ଯ୍ୟେ ନ ବଳାଇ ମନ
ଢନ ଗତି ଶଲ୍ୟା ଅଶନ ବସନ ।
ଦରିଦ୍ର ଉପରେ ଧନୀ ଅତ୍ୟାଚାର
ପ୍ରଜାଙ୍କ ରକ୍ତରେ ରାଜାଙ୍କ ଶୀକାର ।
ବଦଳାଇ ଅଛୁ ତୋର ମତ ଗତି—
ଭ୍ରୂକ୍ଷେପ ନାହିଁ ତୋ' ଅନ୍ୟ କାର୍ଯ୍ୟ ପ୍ରତି ।
ଶଶୀ ସାଥେ ଯେହ୍ନେ ଜଡ଼ିତ ସରତା—
କବି ସାଥେ ଯଥା କବିର କବିତା—
ଫୁଲ ସାଥେ ଯଥା ଫୁଲର ସୁଗନ୍ଧ—
ଜୀବ ସାଥେ ଯଥା ଶରୀର ସମ୍ବନ୍ଧ—

ପ୍ରଜାଙ୍କର ତଥା ଦେଶ ରାଜନୀତି,
ଦୁଃଖ ସୁଖ ଧର୍ମ କର୍ମ ମୂଳଭିତ୍ତି ।
ସେହି ରାଜନୀତି ତୋତେ ଅଛୁ ଧାର,
ଘୃଣ୍ଡ଼ି ଘର ଦ୍ଵାର ଆସିଛୁ ବାହାର ।
ଭବୁ ଭଣ୍ଡିବାକୁ ରାଜପଦ ଭକ୍ତି
କୂଟ କପଟତା ନରହତ୍ୟା-ପ୍ରୀତି ।
ପିନ୍ଧିବାକୁ ତୁହି ବନ୍ଧପରିକର
ଜପୁ ସଦା ସତ୍ୟ ଅହିଂସା ମନ୍ତ୍ର ।
ସେଥି ଲାଗି ତୋତେ ମୋର ଏ ଉତ୍ତର
ଲାଗିଲା ଯେସନେ କ୍ଷୀର ସଙ୍ଗେ ଖାର ।
ସତ୍ୟାଗ୍ରହୀ ପକ୍ଷେ ଏଭଳି ଗ୍ରବନା
କୋମଳ ପରାଣେ ଦେଲା କ ଯାତନା ?
ସତ୍ୟାଗ୍ରହ ଯୁଦ୍ଧେ ନାହିଁ ଲୁଚା ଛପା
ସତ୍ୟାଗ୍ରହ ମାତ ଦିନ ପର ସଫା ।
ଅଧୈର୍ଯ୍ୟ ଏ ପଥ ବିଷାକ୍ତ କଣ୍ଟକ
ଜାଣୁ ଜାଣୁ ଆଜ ଭୁଲିଲ ସେତକ ।
ସୈନିକ ହତ୍ତ ମୁଁ କଲି ବତଳାଉ
ମାତ ପଥୁ ସଖା ହୋଇଲ ସ୍ଖଳିତ ।
ରୂପ ଭେକ ଦେଖି ଭାବୁଛୁ ତୁ ଯାହା
ବାସ୍ତବରେ ପକ୍ଷୀ ଅଟେ କ ମୁଁ ତାହା ?
ସତ୍ୟାଗ୍ରହ ପଛେ କରିଅଛୁ ସନ୍ଧି
ହେଇ ପାରିବୁ ତ କେବେ ସତ୍ୟାଗ୍ରହୀ ?

ଶ୍ରୀ ସାରୁକଣେ ର ଦାସ ।



## ସତ୍ୟ

ରେ ମନ ! କେଉଁ ପଥେ ଅଲକ୍ଷିତେ ଯାଉ ତୁ ପଳାଇ
ଏକାକୀ ତୁ, ବାତୁଳ ପରାଏ ଭ୍ରମି ଏ ସଂସାର
ଲକ୍ଷ୍ୟଭ୍ରଷ୍ଟ ? କଅବା ତୁ ହତଜ୍ଞାନ ହୋଇ
(ତୋତେ) ନାହିଁ ଅବସର-ଅହରହ ବ୍ୟସ୍ତ
ନାହିଁ ସ୍ନାନ ବିଶ୍ରାମର । ୧ ।

ନୁହେଁ କି ସେ ଦନତୋର ଶୁଭ ଆଉ ପୁଣ୍ୟ
ଭୂମିଷ୍ଠ ହେଲୁ ରେ ଯେବେ, ଦନେ ସୁନ୍ଦର ସସାର-
ବକ୍ଷେ ମନୁଷ୍ୟ ଜନମ ହେବ ବୋଲି ଧନ୍ୟ
(ତେଣୁ)ନାହିଁ ଅବସର, କର୍ତ୍ତବ୍ୟର ଡାକ ଅସେ—
ଶୁଣ ନିରନ୍ତର । ୨ ।

ଭୁଲିନାହିଁ କର୍ମମୟ ମନୁଷ୍ୟ ଜୀବନ
ଉଦ୍ଦେଶ୍ୟ ମହାନ୍, ବାଧାବିଘ୍ନ ଅସଂଖ୍ୟ ଅପାର-
ଲଙ୍ଘି ଯିବ; ଲଭିବୁ ସେ ଅମୂଲ୍ୟ ରତନ
(ତୋର) ନାହିଁ ଅବସର-ସାଧନାରେ ସବୁ-
ଅଣା ମେଣ୍ଟିବ ତୋହର । ୩ ।

ଯାଏ ଯୁଝି ଦିବା ନିଶି ପ୍ରତିଜ୍ଞା-ପୂରଣେ
ସାର୍ଥକତା ମନୁଷ୍ୟ-ଜୀବନେ, ଘୁଞ୍ଚାଅ ଅନ୍ଧକାର ।
ଜାଳିଦିଅ ଶିଖା, କର ସଂଗ୍ରାମ ଭୀଷଣ,
(ତେଣୁ)କାହିଁ ଅବସର, ମୋହନିଦ୍ରା ଭାଙ୍ଗି ଶୀଘ୍ର
ଅଣାତସ୍ତ ଧର । ୪ ।

କଏ ସେ ତୋ ପଥଦ୍ରଷ୍ଟା ? କାହାର ବଚନ
ମାନ, କ୍ଷିପ୍ର ପଦେ ହେଉ ଅଗ୍ରସର ? ଶୀଘ୍ର ଧର
ସାନ୍ତ୍ୱନା, ନବେନ ନଘେନ କେବେ କାତର-ପରାଣ,
(ଥଉ)ନାହିଁ ଅବସର — ଜ୍ଞାନାଲୋକ ଜାଳି, ହୃଦ
ଅଲୋକିତ କର । ୫ ।

ନତ୍ୟ ସେହି — ସେହି ଏକା ଅଶ୍ରସ୍ତର ସ୍ଥଳ,
ସତ୍ୟ ସେହି — ଖୋଜ ତାକୁ ଅନ୍ତର ବାହାର
ପରମ ପୁରୁଷ ସେହି, ଜୀବନ ସମ୍ବଳ
(ତେବେ)ଲଭିବୁରେ ସାର — ଶୂନ୍ୟ, ସ୍ୱପ୍ନେ ବତରତ
ଫଳନ୍ତି ମାତର ।

ଶ୍ରୀଗୌରାଙ୍ଗ ଚରଣ ମହାନ୍ତି ।



# ପ୍ରାର୍ଥନା

ନ ଦେଖି ଏ ଜୀବନେ ତବ ରୂପ ମାଧୁରୀ
ଯିବ କି ମୋ ଆଶା ଲତା ଯିବ ଯିବ ଝାଉଁଳି (ଘୋଷା)
ମନ ହୁଏ ଛନ୍ନ ଛନ୍ନ
ବ୍ୟାକୁଳ ବେନି ନୟନ
ଜିହ୍ୱା ଗାଏ ତବ ନାମ କି ଦିବା ଶର୍ବରୀ । ୧ ।

ପୋଷିଛି ମୁଁ ବହୁ ଦିନୁ,
ହେ ଶର ସୁନ୍ଦର ତନୁ
ତବ ଦରଶନ ମାଗ ନୁହେଁ କିଛି ଗୁରୁଷ । ୨ ।

ଖୋଜୁଛି ମୁଁ ଅନୁକ୍ଷଣେ,
ତୁମ୍ଭଙ୍କୁ ନ ପାଏ କେଣେ;
କାହିଁଅଛ ଦିଅ ଦେଖା (ମୋର) ହୃଦ ହୁଏ ବିଦାର । ୩ ।

ଜାଣେ ତୁମ୍ଭେ ଦୀନ ସଖା,
ସ୍ୱପଦରେ ଦିଅ ଦେଖା
ଏ ଅଧମେ ଯାହା ହୁଅ ତବ କୃପା ବଳରି । ୪ ।

ଜାଗୁ ସଦା ସ୍ମୃତି ତବ
ଏ ଆଶିଷ କର ଦେବ
ସ୍ୱପ୍ନସମ ଆଶା ମୋର ତବ ସତ୍ୟ ଦିଅ କରି । ୫ ।

ଶ୍ରୀ ଅକୁଳାନନ୍ଦ ବେହେରା ।

—)୍*୍(—

## —ନିଶୀଥେ—

ଖେଦେଇ ଜହ୍ନକୁ ପୂବେଇ ପବନ
ଘୁଲୁ ଘୁଲୁ ଆସେ ବହି
ଘର କଥା ଦେଖେ ସ୍ୱପନ ବିଦେଶୀ
କାହିଁ ଦୂର ଦେଶେ ରହି,
ଦୂର ଗଗନରେ ସାଗର କୂଳରେ
ଦେଶ ଖଣ୍ଡି ତାର ପର
ଘର ଖଣ୍ଡି କେଡ଼େ ଯତନ ଅଟେ ଗୋ
କେତେ ସୁଖ-ଦୁଃଖ-ଭର ।
ଆନନ୍ଦ ଚହଳ କେତେ କୋଳାହଳ
ଲାଗିଥାଏ ସଦାବେଳେ,
ଦିନ ରାତି ଯାଏ ପାଣି ପରି ବହି
ଜଣାତ ନ ପଡ଼େ ହେଲେ ।
ବାଡ଼ି ଅଗଣାରେ ଘଡ଼ି ଉପରକୁ
ଗୋଟି ଗୋଟି ପଦ କାଢ଼ି,
କି ସୁନ୍ଦର ଆହା ପୋଇ ଲତାଟିଏ
ସୁଖେ ଯାଉଥାଏ ମାଡ଼ି ।
ଅଧେ ଖସି ଅଧେ ଛୁଇକୁ ବାଙ୍କେଇ
ଝଗର ଗଛଟି ସୁଖେ,
ଧଳା ଧଳା ଫୁଲ ମଣ୍ଡି ହୋଇ ଦେହେ,
ହସୁଁଥିବ କାହା ମୁଖେ ।
ବାଳକ ବାଳିକା ବୁଲି ବୁଲି ଫୁଲ
ତୋଳି ଆଣି ନାନା ଜାତି,

ଦିଅଁ ଦେଉଳକୁ ପଠାଇବା ପାଇଁ
ଗୁନ୍ଥୁଥିବେ ହୋଇ ସାଥୀ ।
ପଣ କରୁଥିବେ ଗୁନ୍ଥୁଥିବା ବେଳେ
ଯେ ଗୁନ୍ଥିବ ମାଳା ଆଗେ
ଭଲ ବରଟିଏ ଭଲ କନ୍ୟା ଟିଏ
ମିଳିବ ତାହାର ଭାଗ୍ୟେ ।
ଭୋଦୁଅ ମାସର ରବିବାର ଅଜ
ଖୁଦୁରୁକୁଣୀ ଉପବାସେ,
ଓଷା ପାଳି, ଫୁଲ— ଗୁନ୍ଥୁଥିବେ ବସି
କୁମାରୀ ଗଣ ଉଲ୍ଲାସେ ।
କେତେ କେତେ କଥା କେତେ କେତେ ସ୍ମୃତି
ହେଉଥିବେ କୁହାକୁହି
ଏତେ ଦୂର ଦେଶେ ସେ କଥା ଭାଳିଲେ
ଆଖି-ଲୁହ ଯାଏ ବହି ।

× × × ×

କଏ ତୁ ବିଦେଶୀ ଝାଙ୍କରେ ବସି
ଝୁରୁଥାଉ ଦିବା ରାତି
ଏକା ବସି ଲୁହ ଅନ୍ଧାର ଘରରେ
କେହି ନାହିଁ ତୋର ସାଥି ?
ଲୁହ ପୋଛି ଦେଇ, ବିଦେଶୀ କହଇ—
ଶୁଣିବାକୁ ଦୁଃଖ ମୋର
କାହିଁକି ବଳାଇ- ଅଛ ତୁମେ ମନ
ଶୁଣିବ କି ଦୁଃଖଘୋର ?

କ କହିବ ତୋତେ — ମୋହର ଦୁର୍ଦ୍ଦଶା—
କ କହିବ ମୋର ଦୁଃଖ—
ଯାହା ଭୋଗୁଅଛୁ — କହିବ କଥବା
କହିବ କ ତାହା ସୁଖ ?
ବଳାଇଲ ଯବ — ମନ ହେ ବଦେଶୀ
ଯାହା ପଢୁଛୁ ପ୍ରମାଦ,
ଗୋଟି ଗୋଟି ସବୁ — ବୁଝାଇ କହୁଛୁ
ଶୁଣ ମୋ ସୁଖ ସମ୍ବାଦ ।
ଲାଗିଲା ମୋ ଦେଶେ— ରଣ ଗୋଲ ଅତ
ରାଜା ପ୍ରଜା ଝଣାଝଣି
ଦୁଇ ଦଳ କେତେ — ସମରେ ପଡ଼ିଲେ
ଆପେ ହୋଇ ହଣାହଣି ।
ମୁହିଁ ତହିଁ ଏକ — ନଗଣ୍ୟ ପାଇକ
ସୁଖୀଥିଲି ପ୍ରଜା ପଟେ,
ଯୁଦ୍ଧେ ଯୁଝି, ଶ୍ରାନ୍ତ — ଭଙ୍ଗିବାରୁ ଅଙ୍ଗ—
ବନ୍ଦୀ ମୁଁ ରାଜ ନକଟେ ।
ବନ୍ଦୀ କର ମୋତେ — କେଉଁ ରାଜ ପଥେ
ଆଣିଲେ ଜାଣଇ ନାହିଁ,
କେବଳ ଦେଶର — ସ୍ମୃତି, ଗଲ ଗଲ
ବଞ୍ଚିଅଛି ପଥ ଚାହିଁ ।
ଅନାଇ ରହିଛୁ — କେବେ ସେ ରଣର
ହୋଇ ଯିବ ପୂରା ଶେଷ !
ଦେଖିବ ନୟନ— ଭରି ପୁଣି ଥରେ
ମୋ ଶ୍ୟାମଳ ବନ ଦେଶ ।

ଦେଖିବ ମୋ ନଦୀ — ଅମୃତ ସଲିଳା,
ଦେଖିବ ସାଗର ବେଳା—
ବସନ୍ତ ପବନ ମନ୍ଥକ'ଇ ଦେଇ,
କରିବ ମୋ ପାଶେ ଖେଳା ।
ଶୁଣିବ ମୋ ଦେଶ କୋକିଳର କଣ୍ଠେ
ଲଳିତ ପଞ୍ଚମ ତାନ,
ଦ୍ରିମ୍ଭ ଜନଙ୍କର ପ୍ରେମ ସୋହାଗରେ
ଭରି ଉଠୁଥିବ ପ୍ରାଣ ।
ଯାହା ଉତ୍ସବରେ ସହସ୍ର ସହସ୍ର
ମୋ ଦେଶ ଭଉଣୀ ଭାଇ
ମାତିଥିବେ ସୁଖେ ତାଙ୍କ ସଙ୍ଗତରେ
ଆନନ୍ଦେ ମିଶିବ ଯାଇଁ ।
ମୋହ୍ର ପରି କେତେ ଏ ଘୋର ସମରେ
ଦୁଃଖ ସହି ଥିବେ ଫେର;
ଦେଶ ଭାଇମାନେ ଆମ କଥା ସବୁ
ଶୁଣିବେ ପାଖରେ ଘେରି ।
ସତେ ଜଗନ୍ନାଥ— ନୀଳାଚଳ ନାଥ —
ଜଗତ ମଉଡ଼ ମଣି,
କୃପା ପାରାବାର, କରିବେ କରୁଣା
ଉଶ୍ୱାସି ଦେବେ ଧରଣୀ !
ପେଶିଦେବେ ଥରେ ଅରତ-ରଣେ
ଯେଶନ୍ତ ସେମନ୍ତ ଚନ୍ଦ —
ଗଜ ଡାକ ଶୁଣି ପଲକ ମାତରେ
ଛେଦିଲେ ଦୁରନ୍ତ ନନ୍ଦ ।

ପତିତ ପାବନ ନେତ ଉଡ଼ୁ ଅଛି
ବଡ଼ ଦେଉଳର ଚୂଳେ;
ସେହ୍ୱ ଏକା ଆଶା ଅକୂଳ ସାଗରେ—
ନିଶ୍ଚେ ଲଗାଇବେ କୂଳେ ।
ନୋହିଲେ ତାହାଙ୍କୁ ନିନ୍ଦା ହେବ ସିନା
ଆର୍ତ୍ତତ୍ରାଣ ନାମ ବହି,
ବଡ଼ ଦେଉଳରେ ତାନା ହୁଙ୍କାରଣ
ଥରକେ ଦେଲେ ଭସାର ।
ଏ କାଳେ ସହସା ରଡ଼ିଦେଇ ବଜ୍ର
ପଡ଼ିଲା ଅତି ପ୍ରଚଣ୍ଡ,
କାରାଗାର ଧାମ ପାଷାଣ ପାଚେରି
କରି ଦେଲା ଖଣ୍ଡ ଖଣ୍ଡ ।
ଶତଧା ବିଦୀର୍ଣ୍ଣ କାରା ଗାର ମଧ୍ୟୁଁ
ବୀର ବନ୍ଦୀ ଶତ ଶତ ।
ବାହାରେ ବାହାରି ପ୍ରଭୁ ଜୟ ଗାଇ
ଚଳିଗଲେ ଇତ ସ୍ତତ ।

ଶ୍ରୀ ବିପିନ ଚନ୍ଦ୍ର ସାହୁ ।

## ରଣରଥୀ

କେତେ ଦେବ ଦେବୀ ପୂଜା, କେତେ କଷ୍ଟ ସହ୍ୟ,
ହୃଦୟରେ ସଚରିଲା ଯେଉଁ ଆତ୍ମ ବଳ
ତାହାବଳେ କାଟି ଚିତ୍ତ ମନ୍ତ୍ରର ବନ୍ଧନ
ବାହାରିଲି କରିବାକୁ ଦେଶର ଉଦ୍ଧାର—
ନ ଅସିଲେ କେହି ଜଣେ ଥିଲେ ଯେତେ ସଙ୍ଗୀ,
ଶୁଣି ତାଙ୍କ କଥା ହୃଦ ହୋଇଲା ଖଣ୍ଡି।
କଅଣ କରିବ ବୋଲି ଚିନ୍ତା କଲି କ୍ଷଣେ।
ବଢ଼ିଲା ମୋ ଆଶା ସ୍ରୋତ ଅଧିକୁ ଅଧିକ
ନ ହାରି ସମ୍ବଳ ମୁଁ ସେହି ସ୍ରୋତ ଧାଇଁ
ଆସିଲି ମୁଁ ଭାସି ସେହି ସ୍ରୋତର ଆବେଗେ।
ମିଳିଗଲେ ସେହି ପଥେ କେତେ ଜଣ ସାଙ୍ଗ,
ବାହାର ଅଛନ୍ତି ଯେହୁ କରି ଦୃଢ଼ ପଣ,
ଦେଶୋଦ୍ଧାର ଯାହାଙ୍କର ଏକମାତ୍ର ଲକ୍ଷ୍ୟ
ଶୁଣି ତାଙ୍କ ଏକମାତ୍ର ଲକ୍ଷ୍ୟଦେଶୋଦ୍ଧାର,
କର୍ତ୍ତବ୍ୟ ଠାଉକ ଚିନ୍ତା ହୋଇଲା ମୋହର,
ଯେସନେ ନଦୀର ସ୍ରୋତ ମିଶେ ସମୁଦ୍ରରେ,
ମିଶିଗଲି ତାଙ୍କ ସଙ୍ଗେ ଯାଇ ମୁଁ ତେସନ।
ମିଳି ତାଙ୍କ ସଙ୍ଗେ ମୁହିଁ ଗଲି ରଣ ସ୍ଥଳେ,
ଯୁଝିଲେ ସେ ମହାରଥୀ କରି ଘୋର ରଣ,
ଦେଖି ତାଙ୍କ ଘୋର ରଣ ହୃଦୟେ ମୋହର
ଜନମିଲା ଦୃଢ଼ ଆଶା; ହେବ ବୋଲି ଜୟ
କିନ୍ତୁ କାଳବଳେ ସେହୁ ଗଲେ ଯମ ପୁର।

ଭବିଷ୍ୟତ ଘଟନାରେ ହୋ'ଇଲି ଅଧୀର ।
ଜଣାଇଲି ଏ ବାରତା ସେନାପତି ପଦେ
ଆଦେଶିଲେ ସେନାପତି—'ଯାଅ ରଣସ୍ଥଳେ
ପ୍ରାଣଥିବା ଯାଏ କର ଶାନ୍ତିର ସମର ।
କରନାହିଁ ଅବଶ୍ୟକ ଅନ୍ୟର ସାହାଯ୍ୟ—
ଧର୍ମ ରଣ ଏହି; ବୁଲିବ ତା ଧର୍ମବଳେ
ଏକ ମାତ୍ର ସାହା ଅଛି ସେହି ନାରାୟଣ' ।

× × ×

ଜମ୍ମିଲା ମୋ ହୃଦ ସେନାପତିର ଆଦେଶେ
ପଶିଲି ମୁଁ ରଣ ଭୂମେ; କିନ୍ତୁ ଅନ୍ତରେ
ଜୀବନର ଆଶା ଛାଡ଼ି, କଲି ମୁହିଁ ରଣ ।
ଦେଖି ରଣ କଉଶଳ, ଅରିଏ ସବାସେ
ପ୍ରମାଦ ଗଣନ୍ତି ବୋଲି ହେଉଥାଏ ମନେ ।
ଅବଶେଷେ ତାଙ୍କ ହସ୍ତେ ହେଲି ମୁଁ ପତିତ;
କର୍ତ୍ତବ୍ୟର ସବୁ ଆଶା ହେଲା ମୋର ଲୁପ୍ତ ।
ଛାଡ଼ି ମୁହିଁ ରଣସ୍ଥଳ, ଗଲି ସେହି ଧାମେ—
ଯେଉଁ ଧାମେ ରହିଥିଲେ ମୋ ପୂର୍ବ ସାଥୀଏ,
ମିଳି ତାଙ୍କ ସଙ୍ଗେ ମୁହିଁ ରହିଲି ତୋଷରେ ।
ସ୍ଥାନାନ୍ତର ପୂର୍ବ ରଥୀ ଗଲେ ରଣ ସ୍ଥଳେ
ଅରିଏ ଦେଖିଣ ତାଙ୍କ ରଣ କଉଶଳ,
ହେଉଥିବେ ନିଶ୍ଚେ ବ୍ୟସ୍ତ, ଭାବି ଏହା ମନେ—
ମହାନନ୍ଦେ ହୃଦ ମୋର ହୋଇଲା ପ୍ରଫୁଲ୍ଲ;
କିନ୍ତୁ ଏକ ଶୁଣିଲି ମୁଁ ଅପୂର୍ବ ବାରତା

ରଣସ୍ଥଳୁ ଦୂର୍ବ ରଥୀ ଦେଇ ଛନ୍ଦ ଭଙ୍ଗ
କରିଛନ୍ତି ପଳାୟନ; କରନ୍ତୁ ପ୍ରସ୍ତର
ନ ହେବ ସଫଳ କଷ୍ଟ; ମାତ୍ର ଏହି ରଣେ ।
ନୋହି ଅଟମ୍ଭ ଉପଯୁକ୍ତ ଏହି ରଣ ପାଇଁ,
ଥିଲେ ମୋହି ନିକଟରେ ସେ ରଥୀରୁ ଜଣେ
ପୁଚ୍ଛିଲି ମୁଁ ସେନାପତେ ! କି ଆଦେଶ ତବ ?

ଶ୍ରୀ ଶରତ୍‌ଚନ୍ଦ୍ର ବସୁ ମହାଶୟ



# ମୁକ୍ତିଚିନ୍ତା

ଅନନ୍ତ ଗଗନ ତଳେ ସମସ୍ତ ଜଗତ
ମତ୍ତ ଆଜ ରଖିବାକୁ ଜାତୀୟ ପ୍ରତିଷ୍ଠା
ଲଢ଼ିବାକୁ ଉଚ୍ଚସ୍ଥାନ ବାନ୍ଧିବାକୁ ଶିର
ଆକାଶକୁ, ଅବିରାମ କୌଶଳରେ
ନୂଆ ଆବିଷ୍କାର, ନୂଆ କୂଟ ନୀତି
କେତେ କରନ୍ତି ପ୍ରସ୍ତୁତ ଜାପାନ, ଜର୍ମାନୀ
ଆମେରିକା ଓ ରୁଷିଆ, ଆଫ୍ରିକା
ଇଂଲଣ୍ଡ, ଅଷ୍ଟ୍ରେଲିଆ ଆଦି ଦେଶେ,
କରନ୍ତି ଯୁଦ୍ଧ ଘୋଷଣା; ଏକ ଅନ୍ୟ ସଙ୍ଗେ;
କେହି ହେଲେ ଜୟୀ ସେହି ଅନ୍ୟାୟ ସଂଗ୍ରାମେ
ବାନ୍ଧେ ପଗଡ଼ି ମସ୍ତକେ, ଲଭେ ରାଜ୍ୟ ଖଣ୍ଡେ;
କରେ ଅତ୍ୟାଚାର ପୁଣି ଦୁର୍ବଳ ଉପରେ;
ଦେଇ ନାନା ଦଣ୍ଡ, ମାରେ ତାଙ୍କୁ କ୍ଷୁଧାରେ ତୃଷାରେ
କିନ୍ତୁ ଆଜ ଭାରତରେ ଶୁଭେ କି ଚହଳ ?
ଭୋଗି ନାନା ଦୁଃଖ କଷ୍ଟ ବର୍ଷ ବର୍ଷ ଧରି,
ବ୍ୟଭିଚାର, ଅତ୍ୟାଚାର କି ଭୀଷଣ ହତ୍ୟା
ଅନ୍ୟାୟରେ ସହୁଅଛି ପାତି ନିଜ ପୃଷ୍ଠ !
କହିବି କ'ଣ ? ବାକ୍ୟ ନ ସ୍ଫୁରଇ ମୋର—
ହୃଦ ହୁଅଇ ସ୍ତବଧ ପୁଣି ଶୁଖିଯାଏ ଜିଭ
ବର୍ଣ୍ଣିବାକୁ ସେ ସବୁ ଘଟଣା, ଅନ୍ନାଭାବେ
ବସ୍ତ୍ରାଭାବେ କି ଦୁର୍ଦ୍ଦଶା ତାର ପୁଣ ଜାଣ

ସହନ୍ତି ଅବାଧେ, ସଦା ବନ୍ଧ ଭାଗ୍ୟ ଦେଶ,
ଆଉ ନାହିଁ ଦୂରକଥା, ଚକ୍ଷୁ ମୁକୁଳିତ ତା'ର
ଅହିଂସାର ଅସ୍ତ୍ର ଧରି ଗାଉଛନ୍ତି ବେଦିରେ, ସର୍ବେ ସମ
ଜୀବନ ତଳରେ, ମନୁଷ୍ୟ କୀଟ ପତଙ୍ଗ-
ଆଦି ଯେତେ ପ୍ରାଣୀ, ଯାହା କରୁ ସୃଷ୍ଟିକଲେ
ଜଗତ କରତା, ଅଛି ଦାବି—ହେବ ନିଶ୍ଚୟ ସ୍ୱାଧୀନ ।
ପର ପଦାନତ ହୋଇ ନରବ୍ରତ କେବେ
(ଭବେ) ଶାନ୍ତି ହୋଇବ ସ୍ଥାପନ ।

ଅଧର୍ମର ବାନା ଆଉ ନ ଉଡ଼ିବ ଭବେ
ସରିଯିବ ଶଠତାର ଛନ୍ଦ, କୂଟନୀତି ଭଳତ
ବୈଷମ୍ୟ, ସତ୍ୟର ଜୟବାଣୀ ଘୋଷିବେ ସମସ୍ତେ ।
ଉଠିଯିବ ଜଗତରୁ ଅନ୍ୟାୟ ତାଲିକା ।
ଉଡ଼ିଯିବ ଧୂଳିପରି କୂଟ ଷଡ଼ଯନ୍ତ୍ର;
ତେଣୁ ଗାନ୍ଧୀ ଅବତାର, ପରମ ପୁରୁଷ ।
ଧର୍ମ ପ୍ରତିଷ୍ଠ ଜନ୍ମି ସଦା କରନ୍ତି ଘୋଷଣା
ନୁହେଁ ଏହା ସତ୍ୟ, ନୁହେଁ ଏହା ନ୍ୟାୟ
—କେବଳ ଶଠତା ପଣରେ ଭୁଞ୍ଜିବ
ପରମ ସୁଖ ଚିରକାଳ ପାଇଁ, ଅନ୍ୟ ମରିବ କ୍ଷୁଧାରେ
ତାଙ୍କ ସଙ୍ଗେ ଭକ୍ତ, ଶ୍ରେଷ୍ଠ ଜହର, ପଟେଲ
ମାଳବ୍ୟ, ସୁବାସ ଆଦି ତପସ୍ୱୀ ପରିଏ
ଦ ଆଜୀବନ ତାଙ୍କ ମନ୍ତ୍ର ହୋଇ ଧନ୍ୟ—
ତ ଆତ୍ମ ବଳର ପ୍ରାଧାନ୍ୟ ।
ଏଥେ ପଥିକ, ଉନ୍ନତ ସେ ପଥ;

ଲଙ୍ଘିଯିବ ଧର୍ମବଳେ ଶୋଷଣ ସଙ୍କଟ,
ବର୍ଷନ୍ତୁ ଆଶୀଷ ସ୍ୱର୍ଗୁ ଜଗତ କରତା, ନାହିଁ ଶଙ୍କା।
ପୂର୍ବେ ଉଇଁ ଅରସ ଭାନୁ ଧରି ନବ ଜ୍ୟୋତି,
ଆଉ ଅସମ୍ଭବ ନୁହେଁ ଭାରତର ମୁକ୍ତି।

ଶ୍ରୀଗୌରାଙ୍ଗ ଚରଣ ମହାନ୍ତି



# ଅକାଶ କଇଁଆ

ନଣ୍ଡା କହେ ମୁହିଁ କାଟିବି ଝେର
ଘେଣ୍ଟା କହେ ଯିବ ବଦେଶ ଫେର ।
ଅନ୍ଧ କହେ ମୁହଁ ଦେଖିବ ଆର୍ଶୀ
ହାତଖଣ୍ଡୀ କହେ ଧରିବ ବାର୍ଶୀ ।
ଜଡ଼ା କହେ ମୁହିଁ ଗାଇବ ଗୀତ
ବୁଢ଼ା ଖୁନ୍ଦେ ନବ ଯୁବତୀ ଚିତ୍ତ ।
ମାଙ୍କୁନା କହଇ ମୋଡିବ ନଶ
ଏଥିକ ମୁଁ ଅବା କହିବ କସ ?
ବେପାରି ଧରୁଛି ଶାସନ ଦଣ୍ଡ
କହିବ କଥଣ ନଜେ ତ ଭଣ୍ଡ ।
ବରଫ କହଇ ମୁଁ ଖୁନ୍ଦେ ପାଣି
ଦରଥି ଯାଉଛି ଲବଣ ଆଣି ।
ଝେଙ୍ଗା କହେ ମୁହିଁ ଗୁହିଁବ ବାଙ୍କ
ମଣା ଗୋରୁ ଚହେ କେ ଦେବ ହାଁକ ।
ମାତାଲ କହୁଛି ପିଇବ ଭାଙ୍ଗ
ଧନୀ ନେଉଅଛି ଅପଣା ସାଙ୍ଗ ।
ବିଷଧର ସାପ ଲୋଡ଼ୁଛି ବିଷ
ଏଥିକ ମୁଁ ଅବା କହିବ କସ ?
ଧନୀ ରଜା ହୋଇ ନେଉଛି ଲୁଟି
କଥଣ କହିବି ତା ହାତେ ଚୁଟି ।
ମାଟି ଯାଉଅଛି ଅଣିବ ପାଣି
କୁଣ୍ଡା ଯାଉଅଛି କୁହୁଳା ଆଣି ।

ବାଙ୍ଗଟ ଯାଉଛି ଧରିବ ସାପ
ପେଟ ଲଣ୍ଡିଆ ଯେ ଖୋଜୁଛି ବାପ
ବାଘ ହେବି ବୋଲି କହୁଛି ଭୂଆ
ମୟୂର ହେବାକୁ ଚାହୁଁଛି କୁଆ ।
ଦୁବ ଘାସ ଖାଏ ଆଣି ଜଳହସ
ଏଥିକ ମୁଁ ଥବା କହିବି କସ ?
ନାଚୁଛି ଶାସକ ହୁଗୁଳା ଅଣ୍ଟି
କଅଣ କହିବି ପଢ଼ୁଛି ଚଣ୍ଟି ।

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର



## —ନାହିଁ ଅବସର—

ନୀରବ ନିଶ୍ଚିନ୍ତ ସୁପ୍ତ ରାଜବନ୍ଦୀ ଗଣ
ରୁଦ୍ଧ କକ୍ଷେ କାରାଗାରେ ପ୍ରହରୀ ବେଷ୍ଟିତ—
ନିଃଶବ୍ଦ ନିଶୀଥ କାଳ ନିସ୍ତବ୍ଧ ରଜନୀ,
ପ୍ରହରୀର ସୋପାନସ୍ଥ ପଦକ୍ଷେପ ମାତ୍ର
ଶୁଭେ କକ୍ଷ ଚଉପାଶେ ଭଙ୍ଗି ନୀରବତା ।
ମଧ୍ୟେ ମଧ୍ୟେ ବାଷ୍ପଯାନ ଘର୍ଘର ଶବଦ
ବ୍ୟର୍ଥ କରେ ନିଶୀଥରେ ନିଶବଦ ସବ
ଶୃଗାଳର ହୁକେ ଡାକ ପ୍ରହର-ଜ୍ଞାପକ
କାରାର କୃତ୍ରିମ ଘଣ୍ଟା ବାଦ ସଂମପୃକ୍ତ
ଶୁଭେ କକ୍ଷ ମଧ୍ୟେ ଭେଦ କାରାର ପ୍ରାଚୀର,
କେତେ କଥା ତାହାରର କରାଇ ସ୍ମରଣ ।
ନିଶୀଥେ ପ୍ରକୃତିଲୀଳା ବର୍ଣ୍ଣିବ କେସନେ ?
ରୁଦ୍ଧ ଗୃହେ ଅନ୍ଧପ୍ରାୟ ବସି ମଝ ରାତେ ।
ନ ଦିଶେ ଆକାଶ ଥିବା ଜୁହ୍ନ ଜୁହ୍ନ ଭାସ
କ୍ଷୟଗାମୀ ଚନ୍ଦ୍ରମାଙ୍କ ମଧୁର ତାରତା,
ବଞ୍ଚିତ ପ୍ରକୃତି ଠାରୁ, ବଞ୍ଚିତ ଧରାରୁ;
ବନ୍ଦୀ ଘରେ ଅର୍ଦ୍ଧମୃତ ଜୀବନ୍ତ ପ୍ରକାର,
ସ୍ତିମିତେ ଜଳୁଛି ଦୀପ ରୁଦ୍ଧ କକ୍ଷ ମଧ୍ୟେ;
ଗାଢ଼ ନିଦ୍ରା ଅଭିଭୂତ ବନ୍ଦୀ ଶାନ୍ତ-ସେନା;
କମ୍ବଳ ଆବୃତ ହୋଇ ଆପାଦ ମସ୍ତକେ;
ଦାରୁଣ ଶୈତ୍ୟର କୋପ ନ ପାରି ସମ୍ଭାଳି,
ଜାନୁ ନେଇ ବକ୍ଷ ପାଶେ ହୋଇ ଜାକଜୁକ,

କୂର୍ମ ପରି ପଡ଼ିଛନ୍ତି ନିଶ୍ଚିନ୍ତ ମନରେ ।
ନିଦ୍ରାର ଆବେଶେ ଟେକି ଦୀର୍ଘ ଶ୍ୱାସମାନ,
ମେଣ୍ଟାନ୍ତି ଜୀବନ କ୍ଳାନ୍ତି ଉଦ୍‌ବେଗ ଯେତେକ,
ଖୋଜି ଦେଲି ସ୍ୱପ୍ନ ସମ ଦେଖିଲି ଯେ ଦୃଶ୍ୟ
ପୂରିଗଲା ଏ ହୃଦୟ, କେତେ ଭାବ ରାଶି
କଲା ଆଲୋଡ଼ିତ କ୍ଷୁଦ୍ର ଚିନ୍ତା ଶକ୍ତି ମୋର,
ହେଲି ମୁଁ ଅବଶ କ୍ରମେ ବାହ୍ୟଜ୍ଞାନଶୂନ୍ୟ;
ନୁହେଁ ସେ ଜାଗ୍ରତ ଅବା ନିଦ୍ରିତ ଅବସ୍ଥା ।
କେବଳ ଚୈତନ୍ୟ ମାତ୍ର ଥାଏ ମୋ ଜୀବନ ।
ଦେଖିଲି ଅଦ୍ଭୁତ ଦୃଶ୍ୟ ଏହି ଅବସ୍ଥାରେ—
ରୋମାଞ୍ଚ ହୁଅଇ କଥା ମନେ ପଡ଼ିଗଲେ ।
ଅଦ୍ଭୁତ ସେ ଅଭିନୟ ଅଦ୍ଭୁତ କାହାଣୀ;
ସ୍ୱପ୍ନ ନୁହେଁ ମିଥ୍ୟା ନୁହେଁ ସତ୍ୟ, ସତ୍ୟ ତାହା ।
ଦେଖିଲି ପହିଲେ—ଏକ ଅସ୍ପଷ୍ଟ ଆଲୋକ
ଜାହୁଁ ଆସି, ଧୀରେ ଧୀରେ ମାଡ଼ିଗଲା କକ୍ଷ,
ଏ ଆଲୋକ ହେଲା କ୍ରମେ ସ୍ପଷ୍ଟୁ ସ୍ପଷ୍ଟତର;
ଉଦ୍ଭାସିତ ହେଲା ଗୃହ ଅଦ୍ଭୁତ ପ୍ରକାରେ ।
ସହସା ଉଦିତ ହେଲେ ଶତ ଚନ୍ଦ୍ର ଅବା :
ସେହି ରୁଦ୍ଧ କକ୍ଷେ, ଏତେ ଉଜ୍ଜ୍ୱଳ ଆଲୋକ
ଦେଖିଲି ମୁଁ ତହିଁ, ସୁପ୍ତ ବନ୍ଦୀଙ୍କ ଆସନେ ।
ଛାୟା ମୂର୍ତ୍ତି ଏକ ଏକ ଚିନ୍ମୟ ଶରୀର
ନଥିଲା ଶରୀର ମାତ୍ର ଛାଇ ହେଉଥାଏ ।
କଏ କେଉଁ ମାନବର ସୂକ୍ଷ୍ମ ପ୍ରତିକୃତି
ସୁପ୍ତ ବନ୍ଦୀ ପ୍ରତ୍ୟେକଙ୍କ ଆତ୍ମିକ ଶରୀର ।

ଗୁଢ଼ ସୁପ୍ତ ସ୍ଥୂଳ ଦେହ କରନ୍ତି ଉଦ୍ଧାର—
ନିଜ ବାସନାନୁସାରେ; ଅଦ୍ଭୁତ ଏ ଦୃଶ୍ୟ ।
ସ୍ଥୂଳ କର୍ମେନ୍ଦ୍ରିୟ ଶୂନ୍ୟ, ନାହିଁ ତାଙ୍କ ଭାଷା
ଚଳାନ୍ତି ତାଙ୍କର ଭାଷା ବୁଝୁଥିଲେ ମୁହିଁ
ନପାରନ୍ତି ଜାଣି କେହି କାହାକୁ ସେମାନେ,
ପ୍ରତ୍ୟେକ ଜାଣୁଛି ନିଜେ ଅଛି ଏକାକୀ ।
ନ ପାରନ୍ତି ମୋତେ କେହି ଜାଣି ତ ସେମାନେ
ନିଜ ନିଜ ଭାବ ନେଇ ବ୍ୟାକୁଳ ସମସ୍ତେ ।
କିଏ ବା ଭାବରସେ ବସି ଏକମନେ ଭାବେ
ବିରହ ଶୟନେ ସୁପ୍ତ ପ୍ରେମିକାର କଥା ।
ବହୁ ଦୂରେ ପ୍ରଣୟିନୀ ସୁଦୀର୍ଘ ବିରହ
କରାଏ ଅସ୍ଥିର ତାକୁ, ହୁଏ ଛନ୍ନ ଛନ୍ନ;
ମନ କରେ ଉଡ଼ି ଯିବ କାରାଗାର ଡେଇଁ ।
(ମାଝ) ବାନ୍ଧି ରଖେ ସ୍ଥୂଳ ଦେହ ଶତ୍ରୁ ହସ୍ତେ ବନ୍ଦୀ,
ଏ ନିର୍ମମ ବଳ ଦ୍ୱାରେ ଅସହ୍ୟ ଯାତନା—
ଭୋଗୁଛି ସେ ଗ୍ରସ୍ତା ମୂର୍ତ୍ତି ସ୍ପଷ୍ଟ ଯାଏ ଜଣା ।
କିଏ ବା ଭାବୁଛି ନିଜ ମାତୃ ସ୍ନେହ କଥା,
ମାଆ ସଙ୍ଗେ ହୋଇ ନାହିଁ ଦେଖା କେତେ ଦିନୁଁ ।
କିଏ ବା ଭାବୁଛି ନିଜ ପରିବାର ଦୁଃଖ,
ଅନାହାରେ ପଡ଼ିଥିବେ ପତ୍ନୀ ପୁତ୍ର ସର୍ବେ,
ନ ଥିବେ କେହି ସେଠାରେ ସହାୟ ହେବାକୁ ।
କାହାର ପଡ଼ୁଛି ମନେ ନିଜ ଶିଶୁ ମୁଖ,
ଚୁମ୍ବିଦିଏ ଦେବା ପାଇଁ ହୁଏ ସେ ବ୍ୟାକୁଳ ।
କିଏ ବା ଅଛି ଗୁଢ଼ ଗର୍ଭବତୀ ନାରୀ

ଶୁଣିଛି ସନ୍ତାନଟିଏ ଜନ୍ମିଛି ତାହାର ।
ଦେଖି ନାହିଁ ଶିଶୁ ମୁଖ; କେବେ ସେ ଦେଖିବ
ଦୀର୍ଘ ଦୁଇ ବର୍ଷ ପରେ; (ଭାବ) ହୁଏ ସେ ଅସ୍ଥିର ।
କିଏ ବା ଭାବୁଛି ଘର କରିଛି ନିଲାମ
ଆଦାୟ କରିବାପାଇଁ ସରକାର ତନ୍ତ୍ର ।
ଯାଉଛି ସମ୍ପତ୍ତି ସବୁ; ନିସ୍ୱ ତା କୁଟୁମ୍ବ ।
ଦିଶୁ ନାହିଁ ବୁଦ୍ଧି କିଛି ପ୍ରତିକାର ପାଇଁ ।
କେହି ଅବା ପୀଡ଼ାଗ୍ରସ୍ତ, ଭାବୁଛି ଅନ୍ତିମ
ଅବସ୍ଥା ତାହାର ଆସି ହେଲା ଉପଗତ ।
ବନ୍ଦୀଶାଳେ ନ ପାରିବ ଦେଖି ତାହା ମୁଖ !
ଏକେ ତ ମୃତ୍ୟୁର ଶଙ୍କା, (ପୁଣି ସ୍ୱଜନ ବିଚ୍ଛେଦ)
ଆକୁଳ କରଏ ତାକୁ, ବିଷଣ୍ଣ ହୃଦୟ ।
କିଏ ବା ଭାବୁଛି ହେବ କେବେ ଅବସାନ
ପିଶାଚ ରାଜତ୍ୱ ହେବ ସ୍ୱରାଜ ସ୍ଥାପନ !
ଅତ୍ୟାଚାରୀ ଅତ୍ୟାଚାର ଲଭିଯିବ କେବେ
ଭାବୁଛି ଈଶ୍ୱର ଆଉ ନାହାନ୍ତି କି ସତେ !
କିଏ ଅବା ଭାବୁଅଛି ତା' ବନ୍ଧୁନେ ଯୁଦ୍ଧ
ଲଢୁଛନ୍ତି କେଉଁ ଦେଶେ ନ ପାରୁଛି ଜାଣି;
ବନ୍ଦୀ ହେବା ଦିନୁ ତା'ର ନିଶ୍ଚେ ଯୁଦ୍ଧ ବନ୍ଦ—
ଅଭିମାନୀ ଏହାପରି ଚିନ୍ତାରେ ଅସ୍ଥିର ।
କେହି ଅବା ଧୀର ସ୍ଥିର ପ୍ରଶାନ୍ତ ଚେତସ
ସମ୍ପି ଦେଇ ବିଧାତାଙ୍କ ହାତେ କର୍ମଫଳ,
ଅଟଳ ବିଶ୍ୱାସ ରଖି ତାଙ୍କର ହସ୍ତରେ,
କର୍ତ୍ତବ୍ୟ କରୁଛି ସେହି ରହୁଛି ନିର୍ମଳ ।

ଏହି ପରି ଦୃଶ୍ୟ ଦେଖି ହୋଇଲି ବ୍ୟାକୁଳ
ଭାବିଲି କେଉଁଠି ମୁହିଁ କେଉଁ ରାଜ୍ୟ ଏହି ;
ସ୍ତବ୍ଧ ହୋଇ ନିରେଖିଲି ଚତୁର୍ଦ୍ଦିଗ ମୋର;
ଉପ୍ତ ଖଚ ସବସ୍ତ୍ରେ ଦେଖିଁ ଏକ ଦଣ୍ଡି
ଆସୁଛନ୍ତି ଦିବ୍ୟ ଦୁଇ ଉଜ୍ଜ୍ୱଳ ମୂରତି ।
ଅଗ୍ରିରେ ଭାସ୍କର ଅବା ଚିତ୍ରକ' ରଚିତ,
ନାସା ତଳେ ଗୀରକେଶ ଏ କର ସୁସ୍ପର୍ଶ
ବଳିଷ୍ଠ ତାହାଙ୍କ ଅଙ୍ଗ ଶରୀର ଗଠନ ।
ବଦନୁ ଝଳକୁ ଅଛି ଶାରଦ୍ୱତ ଆଭା;
ସୁନ୍ଦର ଉଷ୍ଣୀଷ ଏକ ଶୋଭଇ ମସ୍ତକେ ।
ତାଙ୍କ ପଛେ କୃଶ୍ରଶାଳୀ ଆସେ ଅନ୍ୟ ମୂର୍ତ୍ତି
ଧୀର ପଦ କ୍ଷେପେ, ଅନୁସରେ ଚିନ୍ତାମଗ୍ନ ଭାବେ—
କ୍ଷୁଦ୍ରକାୟ, ମୁଖଦ୍ୟୁତି ଉତ୍ସାହ-ବ୍ୟଞ୍ଜକ;
ଅନାବୃତ୍ତ ଶିର ତାଙ୍କ ଅନାବୃତ ଗାତ୍ର ।
କଟି ଦେଶେ ଅଛି ମାତ୍ର କ୍ଷୁଦ୍ର ବସ୍ତ୍ର ଖଣ୍ଡେ ।
ନଠେଇ ଦେଖିଲି ମୁହିଁ ଏ ଦୁଇ ମୂରତି
ନ ପାରିଲି ଚିହ୍ନି, ସେହି ପ୍ରଥମ ବ୍ୟକ୍ତିଙ୍କୁ ।
ଦେଖି ନାହିଁ କେବେ ତାଙ୍କୁ ଅବା ତାଙ୍କ ଚିତ୍ର ।
ଦ୍ୱିତୀୟ ମୂରତି ଏତ ସେହି ଦେଶପ୍ରାଣ
ଦରିଦ୍ରଙ୍କ ପାଇଁ କାନ୍ଦି, କାନ୍ଦ ଯେ ମହାତ୍ମା ।
ହୋଇ ତନୁ କ୍ଷୀଣ ଶେଷେ ଛାଡ଼ିଲେ ସଂସାର
ସେହି ଗୋପବନ୍ଧୁ, ମୃତ ଯେତ ବନ୍ଧୁଜନ ପୂର୍ବ୍ବୁ ।
ସେ ପୁଣି ଆସିଲେ କାହିଁ ? ସଙ୍ଗୀ ତାଙ୍କ କିଏ ?
ଆଶ୍ଚର୍ଯ୍ୟ ଲାଗିଲା ମୋତେ ସମସ୍ତ ଘଟଣା ।

ସୁପ୍ତ ରାଜବନ୍ଦୀଙ୍କର ଗୁପ୍ତ ମୂର୍ତ୍ତି ସବୁ
ଧ୍ରୁବ ନେତ୍ରେ ଅନାଇଲେ ଦିବ୍ୟ ମୂର୍ତ୍ତି ହୃଦୟୁ ।
ସମ୍ଭ୍ରମେ ନମିଲେ କେହୁ ଗୋପବନ୍ଧୁ ପଦେ;
ଅନ୍ୟେ ନ ପାରିଲେ ଚହିଁ ହୋଇଲେ ସ୍ତମ୍ଭିତ ।
କହିଲେ ଅଦ୍ଭୁତ ସ୍ୱରେ ଧୀରେ ଗୋପବନ୍ଧୁ
ଆହ୍ୱାନ ବନ୍ଦୀ ସୈନିକେ- "ଶୁଣ ଭାଇମାନେ,
ଆସିଛନ୍ତି ମହାରାଜ ମୁକୁନ୍ଦ ମୋ ସଙ୍ଗେ
ଉତ୍କଳର 'ଏହି ଶେଷ ସ୍ୱାଧୀନ ନୃପତି ।
ଯବନଙ୍କ ଆକ୍ରମଣ ବାରମ୍ବାର ରୋଧି
ଦେଖାଇ ଅଦ୍ଭୁତ ଶୌର୍ଯ୍ୟ ଏ ଭାରତ ଦେଶେ—
ଅବଶେଷେ ହେଲେ ହତ ଟେଙ୍ଗୁଟି ଖାରରେ ।
ନୁହେଁ ଶତ୍ରୁ ପରାକ୍ରମେ, (ନିଜ) ସୈନ୍ୟ ଅବିଶ୍ୱାସେ"
ଏତିକ ଶୁଣିଣ ରାଜା ହୋଇଲେ ଚଞ୍ଚଳ
ନେତ୍ର ଦ୍ୱୟୁ ଅଗ୍ନିକଣା ହୋଇଲା ନିର୍ଗତ ।
ବାଧା ଦେଇ ପଣ୍ଡିତଙ୍କୁ କହିଲେ ସତେଜେ,
"ନ ପକାଅ ମନେ ମୋର ସେ ପୁରୁଣା କଥା ।
ସ୍ମରଣ ମାତ୍ରକେ ଜଳେ ଅଷ୍ଟାଙ୍ଗ ମୋହର ।
ମୋହରି ସମୟେ ହେଲା ଦେଶ ପରାଧୀନ ।
ଏହି ଲଜ୍ଜା ଥାଏ ମୋତେ ମୃତ୍ୟୁପରେ ସୁଦ୍ଧା ।
ଶତ ଶତ ବର୍ଷ ହେଲା ନ ପାରୁଛି ଭୁଲି ।
ପରାଧୀନ ଦେଶ ମୋର ବହୁକାଳ ପରେ
ଜଡ଼ତା ଆଳସ୍ୟ ଛାଡ଼ି ମାତିଛି ସମରେ ।
ପାଇବାକୁ ଫେରି ସେହି ସ୍ୱାଧୀନତା ଧନ ।
ଉତ୍ଫୁଲ୍ଲ ହୃଦୟ ମୋର, ଥାଇ ଏହି ଲୋକେ

ଅସହ୍ୟ ଯନ୍ତ୍ରଣା ଲଭେଁ, ନାହିଁ ନରଦେହ ।
ଥିଲେ ମୁଁ ହଅନ୍ତ ଅଣି ଅହିଂସା ସମରେ
ମହାତ୍ମାଙ୍କ ଧ୍ୱଜା ତଳେ କରନ୍ତ ଲଢ଼ାଇ ।
ବଳାତ୍କାରେ ଦେଶ ଭାଗ୍ୟ ଆଣନ୍ତ ଫେରାଇ ।
ଦୁର୍ନାମ ମୋହର ନାମୁଁ ହୋଇ ଯାନ୍ତା ଦୂର ।
(ମାତ୍ର) ନାହିଁ ତା ମୋ ଭାଗ୍ୟେ ଲେଖା, ଅଶକ୍ତ ମୁହିଁ ।
ନ ପାରିବି ଦେହେଁ ଲଢ଼ି—ମାତ୍ର ଆଶା ମୋର,
ରହିଛି ତୁମର ସାଥେ—ହୁଅ ଅଗ୍ରସର ।
ତଳେ ହେଲେ ଅବସାଦ ନ ଆଣ ମନକୁ ।
ଯେତେଦିନ ରହିଥିବ ଏ ଦେଶ ଅଧୀନ,
ରକ୍ତ, ମାଂସ ପେଷିଦିଅ ସ୍ୱାଧୀନତା ରଣେ ।
ତୁଛ ମଣ ଯେତେ କଷ୍ଟ ପଡ଼ୁଅଛି ଆସି ,
ନିଜର ସ୍ୱାଚ୍ଛନ୍ଦ୍ୟ ସୁଖ ଫିଙ୍ଗି ଦିଅ ଦୂରେ ।
ମନେ ରଖ ସୈନ୍ୟ ତୁମେ, ଦୁଃଖ ତୁମ ସଖା ।
ତୁମର ସହିବା ଦୁଃଖ ହେବ ମୂଳ-ଭିତ୍ତି
ସ୍ୱାଧୀନତା ଦେବୀଙ୍କର, ବିଶାଳ ମନ୍ଦିର
ନିର୍ମାଣିବ ତୁମେ ତାକୁ କାଳ କାଳ ଲାଗି ।
ପୂଜିବେ ତୁମକୁ ତୁମ ଭାବୀ ବଂଶଧର;
ନିନ୍ଦୁଥିବେ ମୋତେ କହି ଦେଶ କୁଳାଙ୍ଗାର ।
କୋଣାର୍କ, ଭୁବନେଶ୍ୱର, ପୁରୀର ଶ୍ରୀରତ
ନୋଇଁବ ମସ୍ତକ ତୁମ ପୁଣ୍ୟ କୀର୍ତ୍ତି ଆଗେ ।
ନାହିଁତ ଜୀବନ—ତୁମ ମହତ ସୌଭାଗ୍ୟ
ରଖ ହେ ପ୍ରତିଜ୍ଞା ତୁମ ନିଜର କୂଳରେ ।
ଜାତି ଦେଶ ତଥା ନିଜ ନିଜ ବଂଶଧରେ

ଆଉ ନ ପାରିବ କହି, ଏ ନର୍ଲଜ୍ଜ ମୁଖେ
ମୁହିଁ ସିନା ଜନ୍ମ ପାଏ ତୁମ ବଂଶ ମଧ୍ୟେ ।
ସହସା ନୀରବ ହେଲେ ଶ୍ରୀ ମୁକୁନ୍ଦ ଦେବ ।
ରହିଲେ ସେ ଅଧୋମୁଖେ କେତେକ୍ଷଣ ଯାଏ
(ତହୁଁ) ସମ୍ବୋଧିଲେ ଗୋପବନ୍ଧୁ ଅଳପେ ରହି ସେ
ରାଜା ମୁକୁନ୍ଦଙ୍କ ମୁଖେ "ନିନ୍ଦ୍ୟ କି ଆପଣ ?
(ଚେତିବ) ନ ଜାଣେ ଜଗତେ କେବା ଅଟଇ ପୂଜାର୍ହ ?
ଆପଣଙ୍କ ତେଜ ଶୌର୍ଯ୍ୟ ବହୁଥିଲା ବୋଲି
ରକ୍ତ ସଙ୍ଗେ, ଧମନୀରେ ଉତ୍କଳ ବଂଶୀର,
ଶତ, ଶତ ବର୍ଷବ୍ୟାପୀ ଅଧୀନତା ପରେ,
ହୋଇଲା ସମ୍ଭବ ପୁଣି ସ୍ୱାଧୀନତା ରଣ।
ଆପଣଙ୍କ ଆଶୀର୍ବାଦ ଆଣିବ ଉତ୍ସାହ,
ଉଡ଼ାଇବ ଜୟ ଧ୍ୱଜା ଭାରତ ଗଗନେ।"
ତହୁଁ ଅନାଇ ବନ୍ଦୀଙ୍କୁ କହିଲେ ପଣ୍ଡିତ
'ଛଳ, ଛଳ ଆଖି—ସ୍ୱର ଶୋକ ଗଦ ଗଦ—
ସହୁଅଛ କେତେ କଷ୍ଟ ସହିବ ଯେ କେତେ
ନାହିଁ ମୁଁ ତୁମର ସାଥେ ହେବାକୁ ସାଥୀଟି
ଭାଗ୍ୟବାନ— ତୁମେ ଭାଗ୍ୟ ହୀନ ନୁହ ।
ମୋ ସମୟେ ଆରମ୍ଭିଲା (ମୋହର ସମୟେ)
ନହେଲା ତା ସାଙ୍ଗ ମୋ ଜୀବଦଶା କାଳେ ।
ତୁମ ହାତେ ହେବ ତାହା ସମାପ୍ତ ନିଶ୍ଚିତ,
ରଖିବ ଅକ୍ଷୁଣ୍ଣ ଯଶ ତିନ ଲୋକେ ବ୍ୟାପି,
ହେଉଛି କଷ୍ଟ ମୁଁ ଦେଶ ସ୍ୱାଧୀନତା ପାଇଁ
ଜାଣିଅଛ ଅନେକେ ସବୁ ଜାଣେ ଭଲ କରି ।

କି ଦୁଃଖ ସାଗର ମଧ୍ୟେ ଯାଉଛ ପଡ଼ିଁର
କେତେ ଚିନ୍ତା ତୁମ ମନ କରେ ଆଲୋଡ଼ନ ?
ସତ୍ୟାର୍ଥ ବାବୁ ମାନେ ଧୀର ସ୍ଥିର ମନେ
ତୁମର ସତ୍ୟତା ହେବ ଶତ୍ରୁ ନାଶ ମନ୍ତ୍ର ।
ଯଦ୍ୟପି ଲୋକଙ୍କ ପେଟେ ଧର୍ମଘାର ନେଇ
ବନ୍ଦସ୍ୱଃଏ, ତେବେ ତାହା ଦେବଙ୍କର ଅସ୍ତ୍ର
ଜାଣ ପୁନଶ୍ଚ, ଶତ୍ରୁ ପ୍ରତି ହେଲା ନିକ୍ଷିପ୍ତ ।
ଯାର୍ଦ୍ଧଶ୍ୱ ସ ଦୁଃଖ ଭରେ ଗୁଡ଼ୁଛ ଯାହାକୁ,
ନୁହେ ତାହା ଅର୍ଥ ଶୂନ୍ୟ, ଈଶ୍ୱରଙ୍କ ଦାସ
ଶତ୍ରୁର ଉଦ୍ଦେଶ୍ୟ ତାହା ହେଉଛି ନିକ୍ଷେପ୍ତ ।
ବିପକ୍ଷର ଅସ୍ତ୍ର ଶତ ଅସ୍ତ୍ର ଶସ୍ତ୍ର ଚଳ,
ମାତ୍ର ଅଟେ ତୁଚ୍ଛ ତାହା ଶାନ୍ତ ଅସ୍ତ୍ର ଆଗେ ।
ନିର୍ଦ୍ଦୋଷର ଆର୍ତ୍ତନାଦ ଲୋକଙ୍କ ନିଃଶ୍ୱାସ
ଏହା ଠାରୁ ବଳ ଅସ୍ତ୍ର ନାହିଁ ଏ ଜଗତେ
ଏହି ଅସ୍ତ୍ରେ ବଳୀ ତୁମେ—ଶାନ୍ତ, ବୀରଗଣ—
ଭାବନା ତୁମର-ତହିଁ ଈଶ୍ୱର ସହାୟ ।
ନହୁଅ ଉଦ୍‌ବେଗ୍ନ ବାବୁ ମନେ ରଖ ସଦା
କର୍ତ୍ତବ୍ୟ ତୁମର ଶୀଘ୍ର ନହେବ ସମାପ୍ତ,
ତୁମ ନିଜ ହାତେ ହେବ ପୂର୍ଣ୍ଣ ସ୍ୱାଧୀନତା
ଦୂର ହେବ ପୂର୍ଣ୍ଣମାନେ ଅଧୀନତା ଗନ୍ଧ ।
ଦରିଦ୍ର ଏ ଦେଶ ହେବ ପୁଣି ଧନେ ଭରା
ଅନ୍ନାଭାବେ ବସ୍ତ୍ରାଭାବେ ନରହିବେ କେହି ।
ହା ହା କାର ପରିବର୍ତ୍ତେ ହାସ୍ୟରୋଳ ଯେବେ
ଉଠିବ ଏ ଦେଶେ, ତେବେ ହେବ ସମାପତି.

ତୁମର କର୍ତ୍ତବ୍ୟ, ତେବେ ଲଭିବ ବିଶ୍ରାମ,
ତେତେ ଦିନ ଯାଏଁ ତିନେ ନାହିଁ ଅବସର
ସରିନାହିଁ ତାଙ୍କ କଥା, ଭାଙ୍ଗିଲା ସ୍ୱପନ;
ଆସିଲା ମୋ ଫେରି ପୂର୍ବ ଅବସ୍ଥା ଯା ଥିଲା ।
ଦେଖିଲି ସମସ୍ତେ ସୁପ୍ତ ଜାଗ୍ରତ ମୁଁ ଏକା—
ରୁଦ୍ଧ କକ୍ଷେ ଅର୍ଦ୍ଧରାତ୍ରେ କାରାଗାର ମଧ୍ୟେ ।
ବନ୍ଦୀଙ୍କର ସୂକ୍ଷ୍ମ ରୂପ ଦିବ୍ୟ ମୂର୍ତ୍ତିଦ୍ୱୟ
ଅଦ୍ଭୁତ ସେ ଦୃଶ୍ୟ ଆଜ ଦେଖି ନ ପାରିଲି ।
ଭାବିଲି ସେ କଥା ପୁଣି ଆଶା ରଖି ମନେ,
ପୁଣି ଯଦି ସେହି ରାତ୍ରେ ଦେଖିବି ସେ ଦୃଶ୍ୟ !
ନହେଲା ତା ମାତ୍ର ଆଜ—ହେଲି ମୁଁ ନିରାଶ
ସେତିକି ଦେଖିଲି; ତାହା ଗୁଣି ହେଲି ମନେ ।

ଶ୍ରୀହରେକୃଷ୍ଣ ମହତାବ



୦

# ଦୋଳ ପୂର୍ଣ୍ଣିମା

ଅର୍ଘ୍ୟ ଗୌରବ ପ୍ରତନ୍ତ୍ର କାହିଁ ଗଲା ଆଜ,
ଅସୁନ୍ଦର ଦଣେ ଧଗ ଶୃଙ୍ଖଳରେ ମଜ୍ଜି ।
କାହିଁ ମୋ ପୁଣ୍ୟ ଭାରତ ରଣ କ୍ଷେତ୍ର ସ୍ଥଳ ।
ଫଗୁ ଖେଳେ ଖେଳୁ ଥାନ୍ତା ଶୋଣିତକୁ ଢାଳି !
ଜଳେ ଜଳ ହୋଇ ଅଜ ଉଠନ୍ତା ଉନ୍ମାଦେ,
ଡାକୁଥାନ୍ତା ବନ୍ଧୁଙ୍କୁ ଭୈରବ ନିନାଦେ ।
ବାଜନ୍ତା ଗୌରବ ବାଜା ଫୁଙ୍କି ରଣଭେରୀ
ଲୁଟୁଥାନ୍ତା ଅତ୍ୟାଚାରୀ ପ୍ରାଣ ଥର ଥର !
ଅସୁନ୍ଦ୍ର ପାଖେଇ ଦୂରେ ଫଗୁ ଗୁଡ ଖେଳ,
ଲଗିଛି ଜାତିର ଅଙ୍ଗ ସମରର ଦ୍ଧରି ।
କମ୍ପଇ ମୋ ପୁଣ୍ୟ ଦେଶ ବଇରୀ ଆଘାତେ
କମ୍ପାଇ ଅସ ତୋ ଗାନ୍ଧ ଗାରଧୂର ଗୋଡେ ।
ଆସ ମୋ ପଲ୍ଲୀ ଯୁବକ ତୋର ପଲ୍ଲୀ ପଥେ
ଖେଳିବା ଏ ଫଗୁ ଖେଳ ସ୍ୱାଧୀନତା ଅର୍ଥେ ।
ବୁଲିବା ଧ୍ୱଂସ ଯୁଗର ଶୋଣିତ ସାଗରେ,
ଭସାଇବା ଅତ୍ୟାଚାରୀ ଶବ ମାଳେ ମାଳେ ।
ଅଣିବା ବିଜୟଲକ୍ଷ୍ମୀ ବୁଡ଼ି ରତ୍ନଗର୍ଭେ
ତେବେ ଟି ଶୋଭିବ ଧରା ପୂରୁବ ଗୌରବେ ।
ଯୁଝିର ସଭବ ରଣଫାନ୍ଦ, ମୋତିଲାଲ
ଡାକନ୍ତି ଅଦୂର ଦେଶେ ଘେନ ଗାର ମାଲ୍ୟ ।

ଶ୍ରୀ ବାଳକୃଷ୍ଣ ସାହୁ



## ବେଉମନା

ଊନବିଂଶ ଶତାବ୍ଦୀର ବିଖ୍ୟାତ ବରଷେ
ଶୁଭକ୍ଷଣେ ଭୂମିଷ୍ଠ ମୁଁ ହେଲି ପୁଣ୍ୟ ବାସେ ।।
ନାମ ଜାଦା ଘର ମୋର କେନ୍ଦୁପାଟଣାରେ
ସମସ୍ତଙ୍କୁ କେନ୍ଦୁ ଦେଇ ନବାତ ପଣାରେ
ବାପମୋର ମାମଲତକାର ନାମ ଲକ୍ଷ୍ମୀପତି
ଖାଇବାକୁ ଘରେ ନାହିଁ କୁଣ୍ଡା ଅବା ବୋଢ
ଶୁଣ ଶୁଣ ନାମ ଗୋଟି ମୋର ଶଶଧର
ଥରେ ଦେଖିଥିବ ଯିଏ ବାନ୍ତି ହେବ ତାର ।
ପିଲାଦିନୁ ଥିବୁବେଳେ ମନ ମୋ ପାଠରେ
ଫଲା ସାର ଦେଲି ଜମା ଆଠ ବରଷରେ
ଘରଖୁସି ହୋଇ ବାପାବଳୁ ପ୍ରଶଂସିଲେ
ମୋ ଅବସ୍ଥା କଥା ଭାବ ସ୍ୱର୍ଗପୁରେ ଗଲେ ।
ତା ପରେ ମିଳିଲା ମତେ ବହୁତ ସୁବିଧା
ନାଚ, କୁଦ, ବୁଲିଲି ମୁଁ ନ ମାନଣ ବାଧା
ବେରୋଜଗାର କରିବାକୁ ବଳିଲା ମୋ ମନ
ଚଳାଚଳ ବୋଲି ଗଲି ଅର୍ଜିବାକୁ ଧନ ।
ଠାବ ଠାବ ହୋଇ ବୁଲି ହେଟା ବାଧ ପରି
ଶେଷେ ଏକ ରାଜା ଘରେ ହୋଇଲି ପ୍ରହରୀ
ଏକ ଦିନେ ରାଜାଝିଅ ଚେହେରା ଦେଖି
ଏମା ବେଳେ ମନ ପ୍ରାଣ ତା'ଠି ଗଲି ଲେଖି ।
ଭାବିଲି ବିଭା ହୁଅନ୍ତି ଯେବେ ସେ ମୋ ସାଙ୍ଗରେ
ମଉଜରେ କେନ୍ଦୁଖାନ୍ତି ବରଷା ପାଗରେ ।

ଯବେ ରାଜା ରାଣୀ ତାଙ୍କ ଝିଅକୁ କହିଲେ
ବିଭା କରି ଦେବ ଯାକୁ ଦେଖି ଦୃଷ୍ଟି ଭୁଲେ ।
ସେହି ଦିନୁ ଭାବିନେଲି ମୋ ଭାଗ୍ୟେ ନିଶ୍ଚୟ
ଘଟିବ ଏସ୍ୱର୍ଗ ସୁଖ, ମନେ କଲି ଲୟ ।
ସେହି କଥା ଭାବି ଭାବି କେତେ ଦିନ ଗଲା
ରାଜ କନ୍ୟା ସ୍ୱୟମ୍ବର ଦିନ ପହଞ୍ଚିଲା ।
କେତେ ରାଜା ମହାରାଜା ସାଜ ସଜା ହୋଇ
ପହଞ୍ଚିଲେ ଆସି ସେଠି ସ୍ୱୟମ୍ବର ପାଇଁ ।
ଏହା ଦେଖି ମନ ମଧ୍ୟେ ବଢ଼ିଲା ସାହସ
ଖଦଡ଼ ଟିକଏ ଖାଲି ହେଲା ବେଶ ବାସ ।
ନାକରେ କାନରେ ଯଥା ଘଟ ଗୁଞ୍ଜିଦେଇ
ଭୁଆଁ ମାରି ଏକଦମ ଗଲି ହାଜର ହୋଇ ।
ନୋଙ୍କି ହୋଇ ଯାଉଥିଲି ଫାଟକ କଡ଼ରେ
ଜଗୁଥିଲା ପ୍ରହରୀଟା ବେଲ୍ଟକ ପାହାରେ ।
କାନ୍ଦୁଣି ମାନ୍ଦୁଣି ହୋଇ ସେଠାରୁ ଖସିଲି
ମର୍କଟକା ମାଙ୍କ ଭାବି ତା ଆଶା ଛାଡ଼ିଲି ।

ଶ୍ରୀ ଚକ୍ରଧର ଶତପଥୀ ।



## —ଉଦ୍‌ବୋଧନ—

ନୀରବ ଶର୍ବରୀ ସୁପ୍ତ ଚରାଚରେ
ନିଦ୍ରା ମାୟା ମନ୍ତ୍ରେ ପଡ଼ିଅଛି ଭୋଳେ
ଜାଗେଣି ତହିଁ କେହ୍ନି ଭାଙ୍ଗିବ ଏ ଶ୍ରାନ୍ତ
ବିଶ୍ୱବାସୀ ସୁପ୍ତି ଲଭି ଦବା ଶାନ୍ତ ।
ବନ୍ଧୁ ଦୂରୁଁ କେବେ ଭସି ଆସେ ଥରେ,
କ୍ଷୁଧାର୍ତ୍ତ ଶୃଗାଳ ବିକଟ ଚିତ୍କାରେ,
ଚିହିଁଭ ନିଦ୍ରିତ ଶିଶୁର ରୋଦନ—
ଶୁଣିଥିଲା ହୁଏ କ୍ଷଣକେ ସ୍ପନ୍ଦନ ।
ମନ୍ଦ ବହେ ବାଆ ଦକ୍ଷିଣ ଦିଗରୁ,
ଆଣେ ସୁବାସିତ ପୁଷ୍ପଗନ୍ଧ ଦୂରୁଁ ।
କୁଳୁ କୁଳୁ ବହେ କ୍ଷୀଣ ନିର୍ଝରଣୀ
ଭେଦି ଗିରିଗୁହା, କ୍ଷେତ୍ର, ଅରଣ୍ୟାଣୀ ।
ଧାଏଁ ଏକ ଧ୍ୟାନେ ସାଗର-ସଙ୍ଗମେ,
ଅଟପ ସେସନେ ଲଙ୍ଘି ବାଧା, ବିଘ୍ନ ।
ମୁକ୍ତାକାଶ ସେହ୍ନ ନୀଳାଭ-ବିତାନ—
ଖଞ୍ଜା ଯହିଁ ତାର ହୀରକ ସମାନ ।
ସୁଧାଂଶୁ ଶରଜେ ତାରକା ବେଷ୍ଟିତ
ରଜତ କଣିକା ବାଣ୍ଟେ ଅବିରତ ।
ସୁପ୍ତ ବିଶ୍ୱବାସୀ ଯେ ଯାହା ଆଗରେ ।
କିଏ ସେ ଯୁବକ ଲୋଟେ ବୃକ୍ଷତଳେ ?
ସୁଗଠିତ-ତନୁ ସ୍ଫୀତ ମାଂସପେଶୀ
ସୁଦୀର୍ଘ ଲଲାଟ, କୃଷ୍ଣ କେଶ ରାଶି

ସମସ୍ତ ଶରୀର ଶୁଭ୍ର ବସ୍ତ୍ରାବୃତ,
ଉପାଧାନ ତାର ନିଜ ବାମ ହସ୍ତ ।
ଜଣାଯାଏ ସେହି ଜଡ଼ କୁଣ୍ଡଳୀଭୂତ,
ନିଦ୍ରା-ତମୋହତ ଯେଣୁ ପଥଶ୍ରାନ୍ତ ।

× × ×

ଏମନ୍ତେ କହିଲା ନିଶି ତିନି ଯାମ,
ଚତୁର୍ଥ ପ୍ରହରେ କଲା ଦୋର୍ପଣ ।
ସପନେ ଯୁବକ ବିସ୍ଫାରିତ ଆଖି,
ଦେଖିଲା ରମଣୀ ଛବି ନିରମାଖି,
ମାନବୀ ନୁହଇ ଦେବୀ ପ୍ରତିମାକି
ଦେବୀ ପ୍ରଭା ଦେହେ ଯାଉଛି ଚହଟି ।

× × ×

କ୍ରମେ ଆସି ମୂର୍ତ୍ତି ଯୁବା ଶିରୋପର
ବସିଲେ ତାହାର ଶିର କୋଳେ ଧରି ।

× × ×

ସ୍ନେହ ଭରେ ଦେବୀ ଉଠାଇ ଧଇଲେ
କୋଳେ ଧରି ତାଙ୍କୁ ଶିରେ ଚୁମ୍ବ ଦେଲେ ।
ମାତୃ ସ୍ନେହହରା ବାଳକ ପରାଏ
ଯୁବା ନେତ୍ରୁ ଅଶ୍ରୁ ଧାରା ବହିଯାଏ ।

× × ×

ଭାବାବେଶେ ଯୁବା ସ୍ନେହବୋଳା ସ୍ୱରେ
ଚାହିଁ ଦେବୀ ମୁଖେ କହେ ଆବେଗରେ—
"ମାତ ! କିଏ ତୁମେ କିବା ପରିଚୟ—
କାହିଁ କୋଳେ ଧରି ବସିଅଛ ? କହ ।

ମାନବୀ ନୋହୁ ତୁ ଦେବୀ ପ୍ରତେହୁ ଏ
ତୋ ମଳିନ ବେଶ ମୋର ହୃଦ ଦାହେ ।
ସଧବା ବିଧବା ବାରି ହୁଏ ନାହିଁ--
ଶରୀରେ ତୋହର ଆଭରଣ କାହିଁ ?
କପାଁ ଭୁଲି ଭୁଲି ସନ୍ୟାସିଣୀପରି,"
କପାଁ ଚନ୍ଦ୍ରାନନ ପଡ଼ିଛୁ ମଉଳି ?

× × ×

ପ୍ରଶଂସା ମୋହର ଶୁଣ ଅଟଗା ମାତ,
ଶେଷ ରକ୍ତ ବିନ୍ଦୁ ତୋ ପାଇଁ ବାଞ୍ଛିତ ।
କହୁଁ କହୁଁ ଯୁବା ଦେଖି ଚହାଡ଼େ ଉଠି
ପଦ ପ୍ରାନ୍ତେ ଦେଖ ପଡ଼ିଗଲା ଲୋଟି ।
ଉଠି ନତଜାନୁ, କୃତାଞ୍ଜଳି ପୁଟେ
ବିଶିନତ ଯେହ୍ନେ ରବି ଶତପଟେ ।

× × ×

ଚେଣୁ ଧାଇଁଅଛି ମନର ଉଛାଟେ
ସାହାଯ୍ୟ ମାଗିବ ସଦା କେହ୍ନ ଭେଟେ ।
ଜଗତବ୍ୟାପି ଲୋକେ ନିଜ ନିଜ ସ୍ୱାର୍ଥ
ପୂରାଇବା ଆଶେ ଉନ୍ନଛନ୍ତି ବ୍ୟସ୍ତ ।
ନିରୂପାୟ ଅସହାୟ ତୋର ମାତା
ଭିକାରୁଣୀ ବେଶେ ପ୍ରତ୍ୟରେ ବାରତା ।
ନାହିଁ କି କର୍ତ୍ତବ୍ୟ ତୋହର ମୋ ପ୍ରତି
ଇଚ୍ଛୁକ ନା କହ ସେହ ସୁଖଶାନ୍ତି ?

ମରଣକୁ କର ପ୍ରଥମ ସୋପାନ—
ଜୀବନ୍ମୁକ୍ତ ଆଣେ ଦିଅରେ ଜୀବନ ।

× × ×

ଟେକ ହାତ ଦୂର ଶୁଷ୍କ ଭୂମି ପରେ
ଘନଗଲା ନଦୀ ଉଠେ ଖର ଚରେ ।
ଉଷା-ଛଟା କଲା ତରୁଣ ଆରତି
ଯୁବା ମନ ଭରି ଗାଏ ସ୍ୱପ୍ନଗୀତି ।

ଶ୍ରୀ ଗଜେନ୍ଦ୍ରନାଥ ସାହୁ ।



ମୁଦ୍ରାକର—ଶ୍ରୀ ଚନ୍ଦ୍ରଶେଖର ମିଶ୍ର ବି. ଏ ଅମ୍ବିକା ପ୍ରେସ, କଟକ

# ଶୁଭ ସମ୍ବାଦ

କୁମାରୀଗୀତିକା, ଲେଖିକା—

ଶ୍ରୀମତୀ ମନମୋହିନୀ ଦେବୀ

ଓ

ଶର କୁମାରୀ, (ଉପନ୍ୟାସ)

ଲେଖିକା—ଶ୍ରୀମତୀ ଶତଦଳବାସିନୀ ଦାସ

ଏହି ଉଭୟ ରଚୟିତ୍ରୀ ପୁସ୍ତକ ଦୁଇଟି ଶହୀଦ ସ୍କୁ ଛପାଣିକୁ ଦାନ କରିଅଛନ୍ତି ।

ପ୍ରାପ୍ତିସ୍ଥାନ—ଜିଲ୍ଲାବୋର୍ଡ ଅଫିସ

ଓ

ସମସ୍ତ ବହିଦୋକାନ (କଟକ)